# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**May- 2022**

୭୭ ଭାଗ ୧୦ମ ସଂଖ୍ୟା ବୈଶାଖ–ଜ୍ୟେଷ୍ଠ ମଇ – ୨୦୨୨

ବିଷ୍ଣୁପଦ ସେଠୀ, ଆଇ.ଏ.ଏସ୍

ପ୍ରମୁଖ ଶାସନସଚିବ

ଇନ୍ଦ୍ରମଣି ତ୍ରିପାଠୀ, ଆଇ.ଏ.ଏସ୍

ନିର୍ଦ୍ଦେଶକ

ଡ. ଲେନିନ୍ ମହାନ୍ତି

ସମ୍ପାଦକ

ସମ୍ପାଦନା ସହଯୋଗୀ

ସଚ୍ଚିଦାନନ୍ଦ ବାରିକ

ସାଧନା ମିଶ୍ର

ପ୍ରଚ୍ଛଦପଟ ଓ ଲେ–ଆଉଟ୍ ଡିଜାଇନିଂ

ମାନସ ନାୟକ

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ

ହେମନ୍ତ କୁମାର ସାହୁ

ଅରୁଣ କୁମାର କର

ଫଟୋ :

ରାଜୁ ସିଂ, ନିରଞ୍ଜନ ବରାଳ

ମନୋରଂଜନ ମହାନ୍ତି, ସନ୍ତୋଷ କୁମାର ସାହୁ


---




ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in

ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

ମଇ-୨୦୨୨







ଗଞ୍ଜାମର ଆରାଧ୍ୟ ଦେବୀ ମା' ତାରାତାରିଣୀଙ୍କ ଭବ୍ୟ ମନ୍ଦିରର ମନୋରମ ଦୃଶ୍ୟ ।

**୫-ଟି ରୂପାନ୍ତରଣ କାର୍ଯ୍ୟକ୍ରମର ପ୍ରକୃଷ୍ଟ ଉଦାହରଣ**

# ପ୍ରତିଷ୍ଠା ହେଲା ଗଞ୍ଜାମର ଆରାଧ୍ୟ ଦେବୀ ମା' ତାରାତାରିଣୀଙ୍କ ନୂତନ ଭବ୍ୟ ମନ୍ଦିର

ବ୍ରହ୍ମପୁରଠାରୁ ୩୦ କିଲୋମିଟର ଦୂର ଋଷିକୂଲ୍ୟା ନଦୀ କୂଳରେ ମା' ତାରାତାରିଣୀଙ୍କ ପୀଠ ଏକ ପ୍ରସିଦ୍ଧ ଶକ୍ତିସ୍ଥଳ । କୁମାରୀ ପାହାଡର ସର୍ବୋଚ୍ଚ ଶିଖରରେ ପୂଜା ପାଆନ୍ତି ଦୁଇ ଦେବୀ ମା' ତାରା ଓ ତାରିଣୀ । ଏହି ପୀଠକୁ ଏକ ନୂଆ କଳେବର ଦେବା ପାଇଁ ମୁଖ୍ୟମନ୍ତ୍ରୀଙ୍କ ପଦକ୍ଷେପ ସାକାର ହୋଇଛି ।

ଭକ୍ତମାନଙ୍କ ପାଇଁ ମନ୍ଦିର ପରିସରରେ ଏକ ମନୋଜ୍ଞ ପରିବେଶ ସୃଷ୍ଟି କରାଯାଇଛି । ପ୍ରସାଦ ସେବନ ଗୃହ, ଦୀପ ପ୍ରଜ୍ୱଳନ ସ୍ଥାନ, ବ୍ୟାଖ୍ୟାନ କେନ୍ଦ୍ର, ମୁଣ୍ଡନ କେନ୍ଦ୍ର, ବିଶ୍ରାମସ୍ଥଳ, ସେଣ୍ଟ୍ରାଲ ପ୍ଲାଜା ଓ ଅତ୍ୟାଧୁନିକ ଆଲୋକ ବ୍ୟବସ୍ଥା ଆଦି ନୂତନ ସୁବିଧା ସହିତ ସ୍ୱଚ୍ଛ ପାନୀୟ ଜଳ ଓ ଅନ୍ୟାନ୍ୟ ସୁବିଧାର ବ୍ୟବସ୍ଥା କରାଯାଇଛି । ପାହାଚ ଶ୍ରେଣୀ, ରୋପ୍ ୱେ ଏବଂ ନୂତନ ସଡକ ଦ୍ୱାରା ପୀଠକୁ ଯିବା ପାଇଁ ୩ ପ୍ରକାରର ବ୍ୟବସ୍ଥା କରାଯାଇଛି । ଏହାସହିତ ନଦୀ କୂଳ ସଡକକୁ ମଧ୍ୟ ନୂତନ ଭାବେ ନିର୍ମାଣ କରାଯାଇଛି ଏବଂ ଏଠାରୁ ଋଷିକୂଲ୍ୟା ନଦୀର ସୌନ୍ଦର୍ଯ୍ୟକୁ ଅନୁଭବ କରିବାର ସୁଯୋଗ ପର୍ଯ୍ୟଟକମାନଙ୍କ ପାଇଁ ଏକ ଅପୂର୍ବ ଆକର୍ଷଣ ସୃଷ୍ଟି କରିପାରିଛି । ଏ ସମସ୍ତ ବ୍ୟବସ୍ଥା ପାଇଁ ୧୧୫ କୋଟିରୁ ଅଧିକ ଟଙ୍କା ବିନିଯୋଗ କରାଯାଇଛି ।

- **ତାରାତାରିଣୀ ପୀଠରେ ଭକ୍ତିମୟ ପରିବେଶ**
- **ପ୍ରତିଷ୍ଠା ହେଲା ମା'ଙ୍କ ନୂତନ ଭବ୍ୟ ମନ୍ଦିର**
- **ଲୋକାର୍ପିତ ହେଲା ଭକ୍ତ ଓ ପର୍ଯ୍ୟଟକଙ୍କ ପାଇଁ ବିଭିନ୍ନ ସୁବିଧା**
- **ହଜାର ହଜାର ଭକ୍ତଙ୍କ ଗହଣରେ ଉତ୍ସବରେ ଯୋଗଦେଲେ ମୁଖ୍ୟମନ୍ତ୍ରୀ**
- **ରାଜ୍ୟବାସୀଙ୍କ ମଙ୍ଗଳ ପାଇଁ ମା'ଙ୍କ ଆଶୀର୍ବାଦ କାମନା କଲେ**
- **ଯୋଜନାର ସଫଳ ରୂପାୟନରେ ସ୍ଥାନୀୟ ଲୋକ ଓ ସେବାୟତଙ୍କ ସହଯୋଗର ଉଚ୍ଚ ପ୍ରଶଂସା କଲେ**
- **ଉତ୍କଳୀୟ କଳା ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଅନୁପମ ନିଦର୍ଶନ- ମୁଖ୍ୟମନ୍ତ୍ରୀ**

ଗଞ୍ଜାମ ଜିଲ୍ଲା ଆଜି ଉତ୍ସବ ମୁଖରିତ । ଜିଲ୍ଲାର ସବୁ ରାସ୍ତା ଆଜି ଯାଇ ପହଞ୍ଚିଛି ମା' ତାରାତାରିଣୀଙ୍କ ପୀଠରେ । ଲୋକଙ୍କ ସୁଅ ଛୁଟିଛି ରତ୍ନଗିରି ପାହାଡକୁ, ମା'ଙ୍କ ଆସ୍ଥାନକୁ । ଗଞ୍ଜାମର ଆରାଧ୍ୟ ଦେବୀ ମା' ତାରାତାରିଣୀଙ୍କ ପୀଠର ହୋଇଛି କାୟାକଳ୍ପ । କଳିଙ୍ଗ ସ୍ଥାପତ୍ୟ ଶୈଳୀରେ ନବନିର୍ମିତ ମନୋରମ ମନ୍ଦିରର ହୋଇଛି ପ୍ରତିଷ୍ଠା ଉତ୍ସବ । ପବିତ୍ର ମନ୍ତ୍ରଧ୍ୱନିର ଉଚ୍ଚାରଣ ତଥା ମଙ୍ଗଳ ବାଦ୍ୟର ନିନାଦରେ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି ହୋଇଛି ।

୫ ଦିନ ଧରି ଚାଲିଥିବା ପ୍ରତିଷ୍ଠା ଉତ୍ସବ ସଂପନ୍ନ ହୋଇଛି । ଏହି କାର୍ଯ୍ୟକ୍ରମରେ ମୁଖ୍ୟ ପୁରୋଧା ଭାବରେ ଯୋଗ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଏହି ଅବସରରେ ଆଜିର ଦିନଟିକୁ ଏକ ପବିତ୍ର ଦିନ ଭାବରେ ବର୍ଣ୍ଣନା କରି ସାରା ଓଡିଶା, ବିଶେଷକରି ଗଞ୍ଜାମବାସୀଙ୍କର ମଙ୍ଗଳ କାମନା କରି ମା'ଙ୍କ ଆଶୀର୍ବାଦ ଭିକ୍ଷା କରିଛନ୍ତି ।

ମୁଖ୍ୟମନ୍ତ୍ରୀ ପ୍ରଥମେ ମା'ଙ୍କର ଦର୍ଶନ କରି ପୂଜାର୍ଚ୍ଚନା କରିବା ସହିତ ପ୍ରତିଷ୍ଠା କାର୍ଯ୍ୟରେ ଯୋଗ ଦେଇଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ଓଡିଶା ଦେବଭୂମି । ଓଡିଶାରେ ଶକ୍ତି ପୂଜାର ପରମ୍ପରା ବହୁ ପ୍ରାଚୀନ । ଓଡିଶାର ଗାଁ ଗାଁରେ ମା'ଙ୍କର ପୂଜା ଅନାଦି କାଳରୁ ଚାଲିଆସିଛି । ମା' ତାରାତାରିଣୀ ହେଉଛନ୍ତି ଗଞ୍ଜାମର ଇଷ୍ଟ ଦେବୀ । ଗଞ୍ଜାମବାସୀଙ୍କ ସୁଖଦୁଃଖରେ ଆମେ ମା'ଙ୍କ ଶରଣ ନେଇଥାଉ ବୋଲି ମୁଖ୍ୟମନ୍ତ୍ରୀ ପ୍ରକାଶ କରିବା ସହ ମା'ଙ୍କ ଆଶୀର୍ବାଦ ଓ ମା'ଙ୍କ ଇଚ୍ଛାରେ ହିଁ ତାଙ୍କ ମନ୍ଦିର ଆଜି ଏହି ଭବ୍ୟ ରୂପ ଗ୍ରହଣ କରିଛି । ଏହି କାର୍ଯ୍ୟରେ ସହଯୋଗ ପାଇଁ ମୁଖ୍ୟମନ୍ତ୍ରୀ ସମସ୍ତଙ୍କୁ ଧନ୍ୟବାଦ ଜଣାଇଥିଲେ ।

ମା' ତାରାତାରିଣୀଙ୍କ ମନ୍ଦିରର ନୂଆ ରୂପକୁ ଓଡିଶାର କଳା ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଅନୁପମ ନିଦର୍ଶନ ଭାବରେ ବର୍ଣ୍ଣନା କରି ମୁଖ୍ୟମନ୍ତ୍ରୀ ଏହି କାର୍ଯ୍ୟରେ ନିୟୋଜିତ ଶିଳ୍ପୀ ଓ କାରିଗରମାନଙ୍କୁ ବିଶେଷ ଅଭିନନ୍ଦନ ଜଣାଇଥିଲେ । ମୁଖ୍ୟମନ୍ତ୍ରୀ କହିଥିଲେ ଯେ ମୁଁ ଯେବେ ବି ମା'ଙ୍କ ଦର୍ଶନ ପାଇଁ ପୀଠକୁ ଆସିଛି, ସେତେବେଳେ ମୋତେ ବହୁତ ଭଲ ଲାଗିଛି ।

ମନ୍ଦିରର ଏହି ନୂଆ ରୂପ ଓ ବିକଶିତ ପରିବେଶ ଅଧିକ ଭକ୍ତ ଓ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବାରେ ସହାୟକ ହେବ ବୋଲି ମତ ଦେଇ ସେମାନଙ୍କ ନିମନ୍ତେ କରାଯାଇଥିବା ବିଭିନ୍ନ ସୁବିଧା ସୁଯୋଗର ଉଚ୍ଚପ୍ରଶଂସା କରିଥିଲେ । ଶେଷରେ ଶାନ୍ତି ଓ ସହଯୋଗ ଭିତ୍ତିରେ ଗଞ୍ଜାମର ବିକାଶ ପାଇଁ ସମସ୍ତେ ମିଳିମିଶି କାମ କରିବାକୁ ମୁଖ୍ୟମନ୍ତ୍ରୀ ଆହ୍ୱାନ ଜଣାଇଥିଲେ ।

ଭକ୍ତ ଓ ପର୍ଯ୍ୟଟକଙ୍କ ପାଇଁ ବିକଶିତ ବିଭିନ୍ନ ସୁବିଧା ସୁଯୋଗର ମୁଖ୍ୟମନ୍ତ୍ରୀ ଲୋକାର୍ପିତ କରିଥିଲେ ଏବଂ ଋଷିକୂଲ୍ୟା ନଦୀ ତଟ ଉନ୍ନତିକରଣ କାର୍ଯ୍ୟର ଭିତ୍ତି ମଧ୍ୟ ରଖିଥିଲେ ।

ପ୍ରତିଷ୍ଠା ଉତ୍ସବରେ ପୁରୀ ଶ୍ରୀଜଗନ୍ନାଥ ମନ୍ଦିର, ଭୁବନେଶ୍ୱରର ଶ୍ରୀ ଲିଙ୍ଗରାଜ ମନ୍ଦିର, ମା' ସମଲେଶ୍ୱରୀ ମନ୍ଦିର ଓ କେନ୍ଦ୍ରାପଡ଼ାର ଶ୍ରୀ ବଳଦେବ ଜୀଉ ମନ୍ଦିର ସମେତ ରାଜ୍ୟର ବିଭିନ୍ନ ମନ୍ଦିରର ସେବାୟତମାନେ ମଧ୍ୟ ଯୋଗ ଦେଇଥିଲେ ।

ଏହି ଭବ୍ୟ ମନ୍ଦିର ନିର୍ମାଣରେ ବିଶିଷ୍ଟ ସ୍ଥପତି ପଦ୍ମଭୂଷଣ ସ୍ୱର୍ଗତ ରଘୁନାଥ ମହାପାତ୍ରଙ୍କର ବିଶେଷ ଅବଦାନ ରହିଥିଲା ।

ପ୍ରତିଷ୍ଠା ଉତ୍ସବ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ସ୍ୱର୍ଗତ ରଘୁନାଥ ମହାପାତ୍ରଙ୍କ ନାତି ଶ୍ରୀ ସ୍ମିତେଶ ମହାପାତ୍ରଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ଅନ୍ୟତମ ସ୍ଥପତି ନାରାୟଣ ତ୍ରିପାଠୀଙ୍କୁ ମଧ୍ୟ ସମ୍ବର୍ଦ୍ଧିତ କରାଯାଇଥିଲା ।

ପୂର୍ବରୁ ଭକ୍ତମାନେ ଅନେକ ପାହାଚ ଚଢି ମା'ଙ୍କ ଦର୍ଶନ ପାଇଁ ଯାଉଥିଲେ ଏବେ ropeway ସହ ପୀଠକୁ ସୁନ୍ଦର ରାସ୍ତା ମଧ୍ୟ ତିଆରି ହୋଇଛି ।





ମା' ତାରାତାରିଣୀ ମନ୍ଦିର ଦର୍ଶନ ଅବସରରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।




ମା' ତାରାତାରିଣୀ ମନ୍ଦିର ସନ୍ନିକଟ ନବନିର୍ମିତ ଯଜ୍ଞ ମଣ୍ଡପ ସମ୍ମୁଖରେ
ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ।



ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କୁ ସେବାୟତମାନେ
ମା’ ତାରାତାରିଣୀଙ୍କ ଏକ ପ୍ରତିକୃତି ପ୍ରଦାନ କରୁଛନ୍ତି ।



ମା' ତାରାତାରିଣୀ ମନ୍ଦିର ପରିସରରେ ସମ୍ବର୍ଦ୍ଧିତ ସେବାୟତଗଣ ।



ମା' ତାରାତାରିଣୀଙ୍କ ନିକଟରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭକ୍ତି ନୈବେଦ୍ୟ ଅର୍ପଣ କରୁଛନ୍ତି । ନିକଟରେ ୫-ଟି ସଚିବ ଶ୍ରୀ ଭି.କେ.ପାଣ୍ଡିଆନ୍ ଉପସ୍ଥିତ ଅଛନ୍ତି ।

# ବୈଷ୍ଣବ ପରମ୍ପରା ଓ ଆଜିର କେନ୍ଦୁବିଲ୍ୱ

ଡକ୍ଟର ଅଜିତ କୁମାର ତ୍ରିପାଠୀ

ଶ୍ରୀଗୀତଗୋବିନ୍ଦକୁ ଏକ ପରିବେଷଣଧର୍ମୀ କୃତି କୁହାଯାଇଛି ଅର୍ଥାତ୍ ଏହା କେବଳ ପଢ଼ିବା ପାଇଁ ନୁହେଁ, ବରଂ ନୃତ୍ୟନାଟିକା ଭାବେ ଅଭିନୀତ ହେବା ପାଇଁ ରଚିତ ହୋଇଥିଲା । ପୁରୀର ଶ୍ରୀମନ୍ଦିର ଥିଲା ଏହାର ପ୍ରସାରଣର ମୁଖ୍ୟ ମାଧ୍ୟମ । କାରଣ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ କେବଳ ଏହା ଶ୍ରୀଜୟଦେବଙ୍କ ଦ୍ୱାରା ରଚିତ ହୋଇଥିଲା ତା' ନୁହେଁ, ନୃତ୍ୟ ସୁନିପୁଣା ପଦ୍ମାବତୀଙ୍କ ନୃତ୍ୟରେ ମଧ୍ୟ ଏହା ଶ୍ରୀଜଗନ୍ନାଥଙ୍କୁ ବିଭୋର କରିଥିଲା ।

ଥରେ ଦୁଇଥର ନୁହେଁ, ବରଂ ନିୟମିତ ଭାବେ ଶତ ଶତ ବର୍ଷ ଧରି ଶ୍ରୀମନ୍ଦିରରେ ଏହା ଅଭିନୀତ ତଥା ନୃତ୍ୟ ଓ ସଂଗୀତରେ ପରିବେଷିତ ହୋଇଥିଲା । ତେଣୁ ଏହା ସମଗ୍ର ଭାରତର ଗାଁ ଗହଳିକୁ ମଧ୍ୟ ପ୍ରସରି ଯାଇଥିଲା । ଭାରତବର୍ଷର ବିଭିନ୍ନ ଅଂଚଳରୁ ଭକ୍ତ, ତୀର୍ଥଯାତ୍ରୀ ଓ ପର୍ଯ୍ୟଟକମାନେ ପୁରୀରେ ଶ୍ରୀଜଗନ୍ନାଥଙ୍କ ଦର୍ଶନରେ ଆସି ଶ୍ରୀଗୀତଗୋବିନ୍ଦ ଶୁଣିଛନ୍ତି ଏବଂ ନୃତ୍ୟନାଟିକାକୁ ଉପଭୋଗ କରିଛନ୍ତି । ସେମାନେ ନିଜ ନିଜ ରାଜ୍ୟକୁ ଫେରିଗଲା ବେଳେ ସଚିତ୍ର ତାଳପତ୍ର ପୋଥି ଶ୍ରୀଗୀତଗୋବିନ୍ଦକୁ ପୁରୀରୁ ସଂଗ୍ରହ କରି ନେଇଛନ୍ତି ଏବଂ ବିଭିନ୍ନ ଅନୁକୃତି ବିଭିନ୍ନ ଟୀକା ଓ ଭିନ୍ନ ଭିନ୍ନ ସଂସ୍କରଣରେ ଚିତ୍ରିତ, ଲିପିବଦ୍ଧ ଓ ପ୍ରକାଶିତ କରିଛନ୍ତି । ଅନେକ ପରିବର୍ତ୍ତନ ହେବା ସ୍ୱାଭାବିକ । ଶ୍ରୀଗୀତଗୋବିନ୍ଦର ମୂଳରୂପକୁ ଅବିକଳ ପ୍ରକାଶ କରିବା ଦିଗରେ ଏବେ ଯେଉଁ ତିନୋଟି ଅଭିନବ ଉଦ୍ୟମ ଓ ନିଷ୍ଠାପର ପ୍ରୟାସ ହୋଇଛି ସେଥିପାଇଁ ଡ. ସୁବାସ ପାଣି, ଡକ୍ଟର ଯୁଗଳ କିଶୋର ଶତପଥୀ ଓ ଶ୍ରୀ ପ୍ରତାପ କୁମାର ମାଝି ଧନ୍ୟବାଦାର୍ହ । କାବ୍ୟ କବିତା, ନୃତ୍ୟ ଓ ସଙ୍ଗୀତ ପ୍ରତି ଏମାନଙ୍କର ଆକର୍ଷଣ, ସଂସ୍କୃତ ଓ ଓଡ଼ିଆ ଭାଷାର ସାହିତ୍ୟ ପ୍ରତି ରହିଥିବା ରୁଚି, କାବ୍ୟରୁ ଶୃଙ୍ଗାର ଓ ଭକ୍ତିରସ ଗ୍ରହଣ ପାଇଁ ଅଦମ୍ୟ ଲିପ୍‌ସା ଏବଂ ମୂଳ ଶ୍ରୀଗୀତଗୋବିନ୍ଦକୁ ବିଶ୍ୱ ସମକ୍ଷରେ ଅବିକଳ ଭାବେ ପରିଚିତ କରିବାର ସାଧୁ ଆକାଂକ୍ଷା ଏମାନଙ୍କୁ ପ୍ରେରିତ କରିଥିବାର ଜଣାଯାଏ ।

ଶ୍ରୀଗୀତଗୋବିନ୍ଦ ରଚନାର ପ୍ରାୟ ଏକଶହ ବର୍ଷ ପରେ ଅର୍ଥାତ୍ ୧୨୫୦ ଖ୍ରୀ.ରେ ପ୍ରକାଶିତ ନାରାୟଣ ଦାସଙ୍କ ଲିଖିତ ସର୍ବାଙ୍ଗସୁନ୍ଦରୀ ଟୀକାକୁ ଆଜି ପର୍ଯ୍ୟନ୍ତ ପ୍ରାପ୍ତ ହୋଇଥିବା ଟୀକାମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ଓ ସର୍ବ ପ୍ରାଚୀନ ଧରାଯାଏ । ନାରାୟଣ ଦାସ ଥିଲେ ଭାରତ ବିଖ୍ୟାତ ସାହିତ୍ୟ ଦର୍ପଣର ଲେଖକ ବିଶ୍ୱନାଥ କବିରାଜଙ୍କର ପ୍ରପିତାମହ । ଏହି ଟୀକାର ମାନ ଯେ ଉଚ୍ଚାଙ୍ଗ କଳାତ୍ମକ ସାହିତ୍ୟ ଏହା ସ୍ୱାଭାବିକ ।

ବିଷ୍ଣୁ ଉପାସନା ଶ୍ରୀକୃଷ୍ଣ ଭାବଧାରାର ବିକାଶଠାରୁ ବହୁ ପୁରାତନ । ସଂସ୍କୃତ ମହାଭାରତ ଓ ହରିବଂଶରେ ବାସୁଦେବ କୃଷ୍ଣଙ୍କୁ ମାଧବ ବୋଲି ବର୍ଣ୍ଣନା କରାଯାଇଛି । ଶ୍ରୀଜୟଦେବଙ୍କ ଶ୍ରୀଗୀତଗୋବିନ୍ଦରେ ଯିଏ ଶ୍ରୀକୃଷ୍ଣ, ସେ ହିଁ କେଶବ ଓ ମାଧବ । ସେ ମଧ୍ୟ ଜଗଦୀଶ ଓ କମଳାପତି ବିଷ୍ଣୁ । ଦକ୍ଷିଣ ଭାରତର ଅଲୱାରମାନେ ଯଦିଓ ବିଷ୍ଣୁ ଉପାସକ ଅର୍ଥାତ୍ ବୈଷ୍ଣବ ଥିଲେ ସେମାନେ ସାରା ଭାରତରେ ବୁଲି ବୁଲି କୃଷ୍ଣଗାଥା ପ୍ରଚାର କରୁଥିଲେ । ସେହି ଯୁଗରୁ ଆଜି ପର୍ଯ୍ୟନ୍ତ ବୈଷ୍ଣବମାନଙ୍କ ମତରେ ଭଗବାନଙ୍କଠାରେ ନିଜକୁ ସମ୍ପୂର୍ଣ୍ଣ ଭାବେ ସମର୍ପଣ କରିବା ଭକ୍ତି ଦ୍ୱାରା ହିଁ ସମ୍ଭବପର । ଭଗବତ୍ ପ୍ରାପ୍ତି ପାଇଁ ଜ୍ଞାନ ଅପେକ୍ଷା ଭକ୍ତି ଅଧିକ ଆବଶ୍ୟକ, ଏହା ବୈଷ୍ଣବମାନଙ୍କର ଦୃଢ଼ ବିଶ୍ୱାସ । ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀର ଦ୍ୱିତୀୟ ଭାଗରେ ଆଦି ଶଙ୍କରାଚାର୍ଯ୍ୟଙ୍କର ଆବିର୍ଭାବ ହୋଇଥିଲା । ଶ୍ରୀଜଗନ୍ନାଥ ସେତେବେଳେ ପୁରୁଷୋତ୍ତମ ନାମରେ ପରିଚିତ ଥିଲେ ଏବଂ ସନାତନ ଧର୍ମର ସୁରକ୍ଷା ପାଇଁ ଶଙ୍କରାଚାର୍ଯ୍ୟ ଯେଉଁ ଚାରୋଟି ଧାମରେ ମଠ ପ୍ରତିଷ୍ଠା କରିଥିଲେ ସେଥିରୁ ଶ୍ରୀଜଗନ୍ନାଥ ପୁରୀ ଥିଲା ଅନ୍ୟତମ । ବାରବର୍ଷ ବୟସରେ

କେନ୍ଦୁବିଲ୍ୱ ଛାଡ଼ି ପୁରୀର ଗୁଣ୍ଡିଚା ମନ୍ଦିର ସାମନାରେ ଆଜି ଯେଉଁ ଦଶାବତାର ମଠ ଦେଖାଯାଏ ସେହି ସ୍ଥାନରେ ଶ୍ରୀଜୟଦେବ ରହୁଥିଲେ ବୋଲି ବିଶ୍ୱାସ କରାଯାଏ । ସେ ସନ୍ଥ କବି ଓ ପୁରୁଷୋତ୍ତମଙ୍କର ଉପାସକ ଭାବରେ ଭାରତ ବିଖ୍ୟାତ ହୋଇପାରିଥିଲେ ।

ଖ୍ରୀ.ଅ. ୧୧୬୯-୧୧୯୨ ପର୍ଯ୍ୟନ୍ତ ଦିଲ୍ଲୀରେ ରାଜତ୍ୱ କରିଥିବା ଶେଷ ହିନ୍ଦୁରାଜା ପୃଥ୍ୱୀରାଜଙ୍କ ବନ୍ଧୁ ଓ ସଭାକବି ଚନ୍ଦ ବରଦାଇ ପୃଥ୍ୱୀରାଜ ରାସୋ ନାମକ ଯେଉଁ କାବ୍ୟ ଲେଖିଥିଲେ ସେଥିରେ ସେ ଶ୍ରୀଜୟଦେବଙ୍କୁ ଶ୍ରୀଗୀତଗୋବିନ୍ଦ ଗାନ କରୁଥିବା ଜଣେ ମହାନ୍ ସନ୍ଥ କବି ଭାବେ ବର୍ଣ୍ଣନା କରିଛନ୍ତି । ଖ୍ରୀ. ୧୧୬୨ରେ ଲିଖିତ ଲିଙ୍ଗରାଜ ମନ୍ଦିରରେ ଥିବା ''ସ୍ୱସ୍ତି ରାଘବ ଦେବସ୍ୟ...'' ଶିଳାଲେଖରେ ସାଧୁଶ୍ରେଷ୍ଠ ଶ୍ରୀଜୟଦେବଙ୍କ ନାମ ଉଲ୍ଲେଖ ଅଛି । ଚୋଡ଼ଗଙ୍ଗଙ୍କ ପୁତ୍ର କାମାର୍ଣ୍ଣବ ଦେବ (୧୧୪୬-୧୧୫୬ ଖ୍ରୀ.ଅ.)ଙ୍କର ଶ୍ରୀଗୀତଗୋବିନ୍ଦ ଏତେ ପ୍ରିୟ ଥିଲା ଯେ ସେ ତାହା ଶ୍ରବଣ ନ କରି ଜଳ ସ୍ପର୍ଶ କରୁନଥିଲେ । ତେଣୁ ଶ୍ରୀଗୀତଗୋବିନ୍ଦ ଦ୍ୱାଦଶ ଶତାବ୍ଦୀର ତୃତୀୟ ଦଶକଠାରୁ ପଂଚମ ଦଶମ କାଳରେ ରଚିତ ହୋଇଥିଲା ବୋଲି ଗବେଷକମାନେ ଗ୍ରହଣ କରିଛନ୍ତି ।

'ଶ୍ରୀଗୀତଗୋବିନ୍ଦ' ଉଭୟ ସୁଖଦାତା ଓ ଶୁଭଦାତା । ଭକ୍ତମାନଙ୍କର ଏହା ଏତେ ଗ୍ରହଣୀୟ, ଆଦରଣୀୟ ଓ ପୂଜନୀୟ ହୋଇପାରିଛି ଯେ ଏହାର ଅନେକ ଶ୍ଳୋକ ମନ୍ତ୍ର ଭାବରେ ପ୍ରୟୋଗ କରାଯାଏ । ଶ୍ରୀଗୀତଗୋବିନ୍ଦ ପୋଥି ଘରେ ରହିଲେ ସୁକୃତି ଉଦୟ ହୁଏ ଏବଂ ପ୍ରେମ ଓ ଭକ୍ତିର ବାତାବରଣ ବିରାଜମାନ କରେ ବୋଲି ବିଶ୍ୱାସ ଅଛି । ସବୁ ଯୁଗରେ ଶ୍ରବଣ, ମନନ ଓ ନିଦିଧ୍ୟାସନକୁ ଭକ୍ତିର ତିନୋଟି ପାହାଚ ବୋଲି ନିଆଯାଇଛି । ମନନ ଓ ନିଦିଧ୍ୟାସନ ପାଇଁ ଆବଶ୍ୟକୀୟ ଜ୍ଞାନ, ବୁଦ୍ଧି ଓ ସମୟର ଅଭାବ ଥିଲେ କଳିଯୁଗରେ କେବଳ ନାମ ଶ୍ରବଣ ସଂକୀର୍ତ୍ତନ ଓ ନାମଜପରେ ମଧ୍ୟ ଈଶ୍ୱର ପ୍ରାପ୍ତି ହୋଇପାରିବ ବୋଲି ବୈଷ୍ଣବମାନେ ବିଶ୍ୱାସ କରନ୍ତି । ସେମାନେ ଶ୍ରୀଗୀତଗୋବିନ୍ଦ ଗାନର ସଂକୀର୍ତ୍ତନକୁ ଏଥିପାଇଁ ସର୍ବୋତ୍କୃଷ୍ଟ ବିଚାର କରନ୍ତି । ଶ୍ରୀଜୟଦେବ ନିଜେ ଶ୍ରୀଗୀତଗୋବିନ୍ଦକୁ କଳିଯୁଗ ଦୁରିତ ନାଶକ ଓ କଳିକଳୁଷ ଖଣ୍ଡନକାରୀ ବୋଲି ବର୍ଣ୍ଣନା କରିଛନ୍ତି । ଶ୍ରୀଗୀତଗୋବିନ୍ଦରେ ସ୍ଥାନିତ ଦଶାବତାରର ସୁଦୂରପ୍ରସାରୀ ଓ ସର୍ବକାଳଜୟୀ ଲୋକପ୍ରିୟତା ଏହାକୁ ସମଗ୍ର ଭାରତରେ ଦଶାବତାର ଶ୍ଳୋକମାନଙ୍କ ମଧ୍ୟରେ ସର୍ବୋଚ୍ଚ ସ୍ଥାନ ଦେଇଛି । ଜୟଦେବଙ୍କ ସ୍ମୃତି ରକ୍ଷା ପାଇଁ ଯାହା କିଛି ଏପର୍ଯ୍ୟନ୍ତ ହୋଇଛି, ତାହା ଆଦୌ ଯଥେଷ୍ଟ ନୁହେଁ ।

ମହାପ୍ରଭୁ ଶ୍ରୀଚୈତନ୍ୟ ଓ ପଂଚସଖା ଉତ୍କଳ ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ କାଳରେ ଶ୍ରୀଚୈତନ୍ୟଙ୍କର ପୁରୀ ବାସ ସମୟରେ ଭୁବନେଶ୍ୱରର ଅନନ୍ତ ବାସୁଦେବ ମନ୍ଦିରରୁ ସଂକୀର୍ତ୍ତନ ଯାତ୍ରାରେ ବାହାରି ବାଲକାଟି, ବାଲିଅନ୍ତା ଦେଇ କେନ୍ଦୁବିଲ୍ୱ ଯାଉଥିଲେ ଏବଂ ପଂଚସଖାଙ୍କ ସହ ଶ୍ରୀଚୈତନ୍ୟ ପବିତ୍ର ତୀର୍ଥ କେନ୍ଦୁବିଲ୍ୱର ରାସ୍ତାରେ ଗୀତଗୋବିନ୍ଦ ବୋଲି ସଂକୀର୍ତ୍ତନ ସହ ନୃତ୍ୟ କରୁଥିଲେ । ତତ୍ପରେ ସଂକୀର୍ତ୍ତନ ଦଳ କଣ୍ଟାପଡ଼ା, ଅଡ଼ଶପୁର, ନିଆଳୀ, ମାଧବ, କାକଟପୁର ଓ କୋଣାର୍କ ଯାଇ ଶେଷରେ ପୁରୀରେ ପହଁଚୁଥିଲେ । ଏହି ଐତିହାସିକ ସଂକୀର୍ତ୍ତନ ଯାତ୍ରାର ସ୍ମୃତିକୁ ଅମର ରଖିବା ପାଇଁ ପ୍ରଥମେ ଶ୍ରୀଜୟଦେବ ସାଂସ୍କୃତିକ ପରିଷଦ ଓ ପରେ ଜୟଦେବ ଫାଉଣ୍ଡେସନ ଟ୍ରଷ୍ଟଙ୍କ ଉଦ୍ୟମରେ ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ଏପରି ଏକ ସଂକୀର୍ତ୍ତନ ଯାତ୍ରା ଗତ ଛବିଶ ବର୍ଷ ଧରି ଚାଲିଛି । ପ୍ରଚଣ୍ଡ ରୌଦ୍ର ତାପକୁ ଖାତିର ନ କରି ବିଭିନ୍ନ ଗ୍ରାମ ଓ ସହରର ପ୍ରାୟ ଏକଶତରୁ ଅଧିକ ଭକ୍ତ ବିଶିଷ୍ଟ ସଂକୀର୍ତ୍ତନ ଦଳ ଏଥିରେ ଯୋଗ ଦିଅନ୍ତି ଏବଂ ବିପୁଳ ସମ୍ବର୍ଦ୍ଧନା ପାଆନ୍ତି । ସବୁ ସ୍ଥାନରେ ପ୍ରଥମ ବର୍ଷଗୁଡ଼ିକରେ ଟ୍ରଷ୍ଟର ଅର୍ଥ ସହାୟତାରୁ ଏବଂ ପରେ ରାଜ୍ୟ ସରକାରଙ୍କ ସମ୍ପୂର୍ଣ୍ଣ ଅନୁଦାନରୁ ସଂକୀର୍ତ୍ତନ ଦଳ ପାଇଁ ପଦ୍ମାବତୀ ମନ୍ଦିର ପ୍ରାଙ୍ଗଣରେ ପ୍ରସାଦ ସେବନର ବନ୍ଦୋବସ୍ତ ବି.ଡ଼ି.ଓ., ବାଲିଅନ୍ତାଙ୍କ ଅଧକ୍ଷତାରେ ଗଠିତ ଅଭ୍ୟର୍ଥନା କମିଟି କରିଥାନ୍ତି । ଏଥିପାଇଁ କୌଣସି ଭୂମିକା, ସହାୟତା ବା ଅବଦାନ ନ ଥାଇ ଅଳ୍ପ କେତେ ବର୍ଷ ହେଲା କେତେକ ଯୁବକ ବିଶୃଙ୍ଖଳିତ ଆଚରଣ ଦେଖାଉଛନ୍ତି ।

ଆଶା କରାଯାଏ, ଶ୍ରୀଜୟଦେବଙ୍କ ଐତିହାସିକ ଜନ୍ମସ୍ଥାନ, ଯାହାକୁ ବୈଷ୍ଣବମାନଙ୍କର ପବିତ୍ର ତୀର୍ଥ ଧରାଯାଏ ସେଠାରେ ବୈଷ୍ଣବ ଭକ୍ତମାନଙ୍କର ଅସମ୍ମାନ ହେବ ନାହିଁ । ପ୍ରାର୍ଥନା ଏହି ଯେ ପ୍ରଭୁ ଶ୍ରୀଜଗନ୍ନାଥ ଓ ବ୍ୟାସାବତାର ଶ୍ରୀଜୟଦେବ କେନ୍ଦୁବିଲ୍ୱର ଯୁବକମାନଙ୍କୁ ସଦ୍‌ବୁଦ୍ଧି ଦେବେ ଏବଂ ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ରାଜ୍ୟ ସରକାର ଏ ସଂକୀର୍ତ୍ତନ ଯାତ୍ରା ଜାରି ରଖିବେ ।



# ଆଧୁନିକ ସମ୍ବଲପୁରୀ ବସ୍ତ୍ରର ଜନକ: ପଦ୍ମଶ୍ରୀ କୃତାର୍ଥ ଆଚାର୍ଯ୍ୟ

**ନୃସିଂହ ଚରଣ ସାହୁ**



ଆମ ରାଜ୍ୟ ବା ଦେଶରେ ନୁହେଁ ସମଗ୍ର ବିଶ୍ୱରେ ସମ୍ବଲପୁରୀ ଶାଢ଼ୀର ଆଦର ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ସାଧାରଣ ତନ୍ତ ବୁଣା ଶାଢୀଟିକୁ ବିଶ୍ୱ ବଜାରରେ ପ୍ରସିଦ୍ଧ କରିବାରେ, ଯେଉଁ ଉଦ୍‌ଯୋଗୀ ପୁରୁଷଙ୍କର ବିଶେଷ ଅବଦାନ ରହିଛି, ସେ ହେଉଛନ୍ତି ସ୍ୱାଧୀନତା ସଂଗ୍ରାମୀ, ମହାନ୍ ସମାଜସେବୀ, ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକ୍ରମର ପ୍ରସାରକ ଓ ଆଧୁନିକ ସମ୍ବଲପୁରୀ ବସ୍ତ୍ରର ଜନକ ପଦ୍ମଶ୍ରୀ ଡକ୍ଟର କୃତାର୍ଥ ଆଚାର୍ଯ୍ୟ ।

ଆଜିକୁ ପ୍ରାୟ ଦୁଇଶହ ପଚାଶ ବର୍ଷ ପୂର୍ବେ ପୁରୀ ପଞ୍ଚକୋଶୀ ମଧ୍ୟରେ ଥିବା ଶ୍ରୀରାମଚନ୍ଦ୍ରପୁର ଶାସନରୁ ଏକ ବ୍ରାହ୍ମଣ ପରିବାର ବର୍ତ୍ତମାନ ବରଗଡ ଜିଲ୍ଲାର ଭେଡ଼େନ୍ ଥାନା ଅନ୍ତର୍ଗତ ମାନପୁରକୁ ଯାଇଥିଲେ । ଶିବ ଓ ଶକ୍ତି ଉପାସକ ଏହି ଯଜୁର୍ବେଦୀ ପରିବାର ପରେ 'ଜବକାଟିକିରା' ନାମକ କ୍ଷୁଦ୍ର ଗ୍ରାମରେ ସ୍ଥାୟୀ ଭାବରେ ବସବାସ କରି ରହିଲେ । ଏହି ବଂଶରେ ଦୀନବନ୍ଧୁ ଆଚାର୍ଯ୍ୟ ଓ ଶୋଭା ଦେବୀଙ୍କ ଜ୍ୟେଷ୍ଠ ପୁତ୍ର ରୂପେ ୧୯୦୦ ମସିହା, ମାର୍ଚ୍ଚ ୨୦ ତାରିଖରେ କୃତାର୍ଥ ଆଚାର୍ଯ୍ୟଙ୍କର ଜନ୍ମ ।

ପିତା ଦୀନବନ୍ଧୁ ଆଚାର୍ଯ୍ୟଙ୍କ ଆର୍ଥିକ ଅବସ୍ଥା ଶୋଚନୀୟ ଥିଲା । ତେଣୁ ବାଲ୍ୟକାଳରୁ ଅତି ଦୁଃଖ କଷ୍ଟରେ ଚଳିଥିଲେ କୃତାର୍ଥ ବାବୁ । ନିକଟସ୍ଥ ମାନପୁର ସ୍କୁଲରେ ସେ ନିମ୍ନ ପ୍ରାଥମିକ ଶିକ୍ଷା ଶେଷ କରି ୧୯୧୨ ମସିହାରେ ବରପାଲୀ ସ୍କୁଲରେ ପଞ୍ଚମ ଶ୍ରେଣୀରେ ନାମ ଲେଖାଇଥିଲେ । ସେଠାରେ କୃତାର୍ଥଙ୍କ ମାମୁ ଘରେ ଥିଲେ ମଧ୍ୟ ତାଙ୍କ ଆର୍ଥିକ ଅବସ୍ଥା ଭଲ ନଥିଲା । ମେସ୍‌ରେ ରଖାଇ ପାଠ ପଢାଇବାକୁ ପିତାଙ୍କର ସମ୍ବଳର ଅଭାବ । କିନ୍ତୁ ସେ ବେଳର ସହୃଦୟ ଶିକ୍ଷକମାନେ କୃତାର୍ଥଙ୍କ ଭଳି ଭଲପିଲା ପାଇଁ ଚାନ୍ଦା ସଂଗ୍ରହ କରି ପାଠ ପଢାର ବ୍ୟବସ୍ଥା କରିଥିଲେ । ଶିକ୍ଷକମାନଙ୍କର ଗୋଟିଏ ମେସ୍ ଥିଲା ।

ସେଥିରେ ରାନ୍ଧୁଣି କାର୍ଯ୍ୟ କଲେ କୃତାର୍ଥ । ସେ କୂଅରୁ ପାଣି କାଢି ଶିକ୍ଷକମାନଙ୍କର ବାସନ ଧୁଅନ୍ତି, ରନ୍ଧାବଢା କରି ସମସ୍ତଙ୍କୁ ଖାଇବାକୁ ଦିଅନ୍ତି । ତା'ପରେ ନିଜେ ଖାଇସାରି ପାଠ ପଢନ୍ତି । ଏସବୁ କାର୍ଯ୍ୟ କରି ମଧ୍ୟ ମେଧାବୀ କୃତାର୍ଥ ସବୁ ଶ୍ରେଣୀ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ୧୯୧୭ ମସିହାରେ ସେ କୃତିତ୍ୱର ସହ ମାଇନର ପାସ୍ କରି ମାସିକ ପାଞ୍ଚଟଙ୍କା ବୃତ୍ତି ପାଇଲେ । ଭିକ୍ଷା କରି ପରିବାର ପ୍ରତିପୋଷଣ କରୁଥାନ୍ତି ତାଙ୍କ ପିତା ଦୀନବନ୍ଧୁ ଆଚାର୍ଯ୍ୟ । କୃତାର୍ଥଙ୍କୁ ହାଇସ୍କୁଲରେ ପଢାଇବାକୁ ତାଙ୍କର ସମ୍ବଳ କାହିଁ? ଏତିକିବେଳେ ବରପାଲି ସ୍କୁଲର ଜଣେ ଗୁଣଗ୍ରାହୀ ଶିକ୍ଷକ ସୋମନାଥ ଦାଶ ମାସିକ ପାଞ୍ଚଟଙ୍କା ସାହାଯ୍ୟ କରିବେ ବୋଲି ପ୍ରତିଶ୍ରୁତି ଦେବାରୁ କୃତାର୍ଥ ସମ୍ବଲପୁର ହାଇସ୍କୁଲରେ ନାମ ଲେଖାଇଲେ । ସେଠାରେ ମଧ୍ୟ ବହୁ ଦୁଃଖ କଷ୍ଟରେ ମେସ୍‌ରେ ଚଳୁଥାନ୍ତି । ବୃତ୍ତି ଟଙ୍କା ବିଳମ୍ବରେ ଆସିଲେ ମେସ୍‌ରେ ଖାଇ ପାରନ୍ତି ନାହିଁ । ଦିନେ ଦିନେ ସେ ଖାଲି ପାଣି ପିଇ ଶୋଇ ଯାଆନ୍ତି । ଏତେ ଦୁଃଖ କଷ୍ଟରେ ମଧ୍ୟ ସେ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରନ୍ତି । ୧୯୧୮ ମସିହାରେ ତାଙ୍କର ସ୍ନେହମୟୀ ଜନନୀ ଶୋଭା ଦେବୀଙ୍କର ମୃତ୍ୟୁ ହୋଇଗଲା । ଠିକ୍ ପରେ ପରେ ତାଙ୍କ ପିତା ମଧ୍ୟ ଇହଧାମ ପରିତ୍ୟାଗ କଲେ । ଶୁଦ୍ଧିକ୍ରିୟା କରିବାକୁ ତାଙ୍କ ପାଖରେ ଗୋଟିଏ ଟଙ୍କା କିମ୍ବା ମୁଠିଏ ଚାଉଳ ମଧ୍ୟ ନଥିଲା । ଯାହାହେଉ ମାଗି ଯାଚି ବନ୍ଧୁ ବାନ୍ଧବଙ୍କଠାରୁ ସାହାଯ୍ୟ ଆଣି କୌଣସି ପ୍ରକାରେ ପିତାଙ୍କ ଶୁଦ୍ଧିକ୍ରିୟା କାର୍ଯ୍ୟ ସମାପନ କଲେ ।

ରୂପ, ପ୍ରତିଭା ଓ ଅଧ୍ୟବସାୟ ଯେପରି ଯୁବକ କୃତାର୍ଥ ବାବୁଙ୍କଠାରେ ଏକତ୍ର ପ୍ରତିଫଳିତ ହୋଇଥିଲା । ତାଙ୍କୁ ଜ୍ୱାଇଁ କରିବାକୁ ଚାହିଁଲେ ପୂର୍ବୋକ୍ତ ସାହାଯ୍ୟକାରୀ ଶିକ୍ଷକ ସୋମନାଥ ଦାଶ । ପିତୃହୀନ ଯୁବକ କୃତାର୍ଥଙ୍କ ଘରେ ବିଭାଘର ପାଇଁ ଟଙ୍କାଟିଏ ମଧ୍ୟ ନଥାଏ । ଉଭୟ ପକ୍ଷର ଖର୍ଚ୍ଚ ବହନ କରି ସୋମନାଥ ବାବୁ ତାଙ୍କ କନ୍ୟା କନକଲତାଙ୍କୁ କୃତାର୍ଥଙ୍କ ସହ ବିବାହ କରାଇଥିଲେ । କିଛିଦିନ ପରେ କୃତାର୍ଥ ବାବୁ ଆମାଶୟ ରୋଗରେ ପୀଡିତ ହେଲେ । ସେ ଆରୋଗ୍ୟ ଲାଭ କଲା ପରେ ତାଙ୍କ ସ୍ତ୍ରୀ କନକଲତା ମଧ୍ୟ ଆମାଶୟରେ ପୀଡିତ ହୋଇ ପ୍ରାଣତ୍ୟାଗ କଲେ । ନବବିବାହିତା ପତ୍ନୀର ମୃତ୍ୟୁରେ ସେ ଭାଙ୍ଗିପଡିଲେ । ପାଠପଢାରେ ବିଶେଷ ମନଦେଲେ ନାହିଁ । ସେହି ବର୍ଷ ମାଟ୍ରିକ ପରୀକ୍ଷା ଦେଇ ଇଂରେଜୀରେ ମାତ୍ର ୧ନମ୍ବର କମ୍ ରଖିବା ଯୋଗୁଁ ଫେଲ୍ ହୋଇଗଲେ । ତାହାପରେ କଟକ ଆସି ରେଭେନ୍ସା କଲେଜର ଅଧ୍ୟାପକ ପର୍ଶୁରାମ ମିଶ୍ରଙ୍କ ସହାୟତାରେ ପ୍ୟାରୀମୋହନ ଏକାଡେମୀରେ ଅଧ୍ୟୟନ କଲେ । ଦୁର୍ଯୋଗ ଏମିତି ଯେ, ଏଥର ମଧ୍ୟ ସେହି ଇଂରାଜୀ ବିଷୟରେ ଦୁଇନମ୍ବର କମ୍ ରଖି ସେ ଅକୃତକାର୍ଯ୍ୟ ହେଲେ । ଏକ ଅନିଶ୍ଚିତ ଅବସ୍ଥାରେ ତାଙ୍କର ସମୟ ଅତିବାହିତ ହେବାକୁ ଲାଗିଲା ।

ଏହି ସମୟରେ ଦେଶରେ ଅସହଯୋଗ ଆନ୍ଦୋଳନ ଚାଲିଥାଏ । ଗାନ୍ଧିଜୀଙ୍କ ଆହ୍ୱାନ କ୍ରମେ ସେ ଛାତ୍ର ଜୀବନରୁ ଖଦଡ ବସ୍ତ୍ର ବ୍ୟବହାର କରିବା ସହ ସ୍ୱଦେଶୀ ଆନ୍ଦୋଳନ ପ୍ରତି ଆକୃଷ୍ଟ ହୋଇ ପଡିଥିଲେ । ସମ୍ବଲପୁରର ଲକ୍ଷ୍ମୀନାରାୟଣ ମିଶ୍ର ଓ ପଣ୍ଡିତ ନୃସିଂହ ଗୁରୁଙ୍କ ଦ୍ୱାରା ପ୍ରଭାବିତ ହୋଇ ସ୍ୱାଧୀନତା ଆନ୍ଦୋଳନ ପ୍ରତି ସେ ମନ ବଳାଇଲେ । ପାଠପଢା ଛାଡିଦେଇ ଗାନ୍ଧିଜୀଙ୍କ ଚରଖା ଆନ୍ଦୋଳନର ପ୍ରସାର ପାଇଁ ମନେମନେ ଚିନ୍ତା କରୁଥାନ୍ତି । ଏଥିପାଇଁ କୃତାର୍ଥ ବାବୁ କିଛି ବ୍ୟବସାୟିକ ଧନ୍ଦା କରିବାକୁ ଚାହୁଁଥିଲେ । ମନ ଥିଲେ ଉପାୟ ମିଳେ । ସେସମୟରେ ବରପାଲୀର ଜଣେ ମହାଜନ ଓ ମଠା ବ୍ୟବସାୟୀ ବିଶ୍ୱନାଥ ଦାସ ତାଙ୍କୁ ସହାୟକ ରୂପେ ନିଯୁକ୍ତି ଦେଲେ । ବେଶ୍ ସଫଳତାର ସହ ବ୍ୟବସାୟ କାର୍ଯ୍ୟ ତୁଲାଇବା ସହ କର୍ମ ପ୍ରଣାଳୀରୁ କିଛି ଶିକ୍ଷା ମଧ୍ୟ ସେ ଲାଭ କଲେ । କିଛିଦିନ ପରେ ସେ ସମ୍ବଲପୁର ଆସି ଜଣେ ମୁସଲମାନ ଜୋତା ଦୋକାନୀଙ୍କ ପାଖରେ ମାସିକ ୩୦ଟଙ୍କା ଦରମାରେ ଚାକିରି କଲେ । ତାଙ୍କର ଦକ୍ଷତା, ସାଧୁତା ଓ ଅଧ୍ୟବସାୟ ଯୋଗୁଁ ଦୋକାନର ଖୁବ୍ ଉନ୍ନତି ହେଲା । ଦିନେ ଦୋକାନର ମାଲିକ,

ତାଙ୍କର ଜୋତା ପୋଛିଦେବା ପାଇଁ କହିବାରୁ ସ୍ୱାଭିମାନୀ କୃତାର୍ଥ ବାବୁ ସେ ଦୋକାନ ଛାଡିଦେଇଥିଲେ । ଦୋକାନୀ ଜଣକ ଅଧିକ ଦରମା ଦେବାର ପ୍ରଲୋଭନ ଦେଖାଇବାରୁ ସେ କହିଥିଲେ, 'ଶେଠଜୀ! ଏଣିକି ମୁଁ ଚାକର ନ ହୋଇ ମାଲିକ ହେବି, ଅନ୍ତତଃ ଗୋଟିଏ ଶଗଡ, ହଳେ ବଳଦ କିଣି ତା'ର ମାଲିକ ହୋଇ ପାରିବି ।' କିନ୍ତୁ ସେହି ଦୋକାନରେ କ୍ରୟ ବିକ୍ରୟ ନୀତି, ତାଙ୍କ ପାଇଁ ଥିଲା ପ୍ରଶିକ୍ଷଣ କେନ୍ଦ୍ର ।

ଜୋତା ଦୋକାନ ଛାଡି ନିଜର ଭରଣପୋଷଣ ପାଇଁ ସେ ସମ୍ବଲପୁରରେ ଟିଉସନ ଆରମ୍ଭ କଲେ । ପିଲା ପଢିଲେ, ମାତ୍ର କେହି ଟଙ୍କା ଦେଲେ ନାହିଁ । ନିଜ ଗାଁ ଜବକାଟିକିରାକୁ ଫେରିଆସିଲେ କୃତାର୍ଥ ବାବୁ । ଏଠାରେ ପୁନଶ୍ଚ ଆମାଶୟ ରୋଗରେ ପୀଡିତ ହେଲେ । ଶେଷ ସମ୍ବଳ ନିଜର ମୁଦିଟିକୁ ବିକି ଔଷଧ ଖାଇ ସେ କ୍ରମେ ସୁସ୍ଥ ହେଲେ । ୧୯୨୮ମସିହା ବେଳକୁ ସେ ଆସିଲେ ବରଗଡ । ସେଠାକାର ମାରଓ୍ୱାଡି ପଟିରେ ତାଙ୍କୁ କିଛି ଟିଉସନ ମିଳିଲା । କ୍ରମେ ଅଧିକ ପିଲା ତାଙ୍କ ପାଖକୁ ପଢିବାକୁ ଆସିଲେ । ଜୋତା ଦୋକାନରୁ ୩୦ ଟଙ୍କା ମିଳିଲାବେଳେ ଏଠି ତାଙ୍କୁ ମିଳିଲା ୧୫୦ଟଙ୍କା । ବ୍ୟବସାୟୀମାନଙ୍କ ହିସାବ କିତାବ ଦେଖି ଓ ତମସୁକ ଲେଖାଲେଖି କରି ମଧ୍ୟ କିଛି ଅଧିକ ଅର୍ଥ ସେ ରୋଜଗାର କଲେ । ବ୍ୟବସାୟୀମାନଙ୍କ କାର୍ଯ୍ୟ କରିବା ଫଳରେ ସେ କିଛି ବ୍ୟବସାୟିକ ବୁଦ୍ଧି ମଧ୍ୟ ଅର୍ଜନ କଲେ । କିନ୍ତୁ ପିଲାଙ୍କୁ ପଢାଇବାରୁ ଘରେଘରେ ସେ 'କୃତାର୍ଥ ମାଷ୍ଟ୍ରେ' ନାମରେ ପରିଚିତ ହୋଇଗଲେ । ସେ ସମୟକୁ ଗାନ୍ଧିଜୀଙ୍କର 'ଚରଖା ଆନ୍ଦୋଳନ' ଆରମ୍ଭ ହୋଇଯାଇଥାଏ । ଛାତ୍ର ଜୀବନରୁ ବିଦେଶୀ ବର୍ଜନ, ସ୍ୱଦେଶୀ ଓ ସ୍ୱାଧୀନତା ଆନ୍ଦୋଳନ ପ୍ରତି ସେ ଆକୃଷ୍ଟ ହୋଇଥିଲେ । ଏବେ ଚରଖାରେ ସୂତା କାଟିବା ପାଇଁ ବରଗଡ ନିକଟସ୍ଥ ଆମ୍ବାପଲ୍ଲୀ ହରିଜନ ପଡାରେ ସ୍ଥାପନ କଲେ 'ଚରଖା କେନ୍ଦ୍ର' । ପ୍ରଖ୍ୟାତ ସ୍ୱାଧୀନତା ସଂଗ୍ରାମୀ ଭାଗୀରଥି ପଟ୍ଟନାୟକ ହେଲେ ତାଙ୍କର ପରାମର୍ଶଦାତା ।

ବିବାହ ବେଦୀରେ ନବ ବଧୂଟିର ଗହଣାଗାଣ୍ଠି ଅପେକ୍ଷା ସେ ପରିହିତା ଶାଢ଼ୀ ଖଣ୍ଡିକ ବରପକ୍ଷର ଲୋକମାନଙ୍କୁ ବେଶ୍ ଆକର୍ଷିତ କରିଥାଏ । ସେ ପୁଣି ଯାହି ତାହି ଶାଢୀ ନୁହେଁ ବିଭିନ୍ନ ଚିତ୍ରରେ ଶୋଭିତ, ବାନ୍ଧକଳା, ମନ ମତାଣିଆ ରଙ୍ଗର 'ସମ୍ବଲପୁରୀ ଶାଢୀ' । ନବ ବଧୂ ନୁହେଁ, ସମସ୍ତ ଗୃହିଣୀଙ୍କର ଏହି ସମ୍ବଲପୁରୀ ଶାଢୀ ପାଇଁ ଥାଏ ଏକ ଅବୁହା ଆକର୍ଷଣ । ସେଠାରେ ସେ କେତେକ ହରିଜନ ଲୋକଙ୍କୁ ନୂଆ ପ୍ରଣାଳୀରେ ଖଦଡ଼ ଲୁଗା ବୁଣିବା କୌଶଳ ଶିଖାଇଲେ । ବିଭିନ୍ନ ଶାଢ଼ୀରେ ରଙ୍ଗ ଦେବା ପାଇଁ ବିଦେଶୀ ରଙ୍ଗ ବ୍ୟବହାର କଲେ ତାହା ଗାନ୍ଧି ବିରୋଧୀ ହେବ ବୋଲି ଦେଶୀ ରଙ୍ଗ ବ୍ୟବହାର କରିବା ପାଇଁ ଚିନ୍ତାକଲେ କୃତାର୍ଥ ବାବୁ । ସୌଭାଗ୍ୟକୁ ସେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ରଚିତ ପୁସ୍ତକରୁ ଦେଶୀୟ ରଙ୍ଗ ପ୍ରସ୍ତୁତି ପ୍ରଣାଳୀ ସଂପର୍କରେ ଅବଗତ ହେଲେ । ଏହାପରେ ସେ ରାସାୟନିକ ପ୍ରଣାଳୀରେ ଦେଶୀୟ ବୃକ୍ଷଲତାରୁ ରଙ୍ଗ ବାହାର କରି ବିଭିନ୍ନ ରଙ୍ଗରେ ସୂତା ରଙ୍ଗୀନ କଲେ । ନିଜେ ଯଜୁର୍ବେଦୀୟ ବ୍ରାହ୍ମଣ ହୋଇଥିଲେ ମଧ୍ୟ ସେ ଜାତିପ୍ରଥା ମାନୁନଥିଲେ । ଏପରିକି ଆମ୍ବାପଲ୍ଲୀର ହରିଜନମାନଙ୍କ ଘରେ ମଧ୍ୟ ସେ ପାଣି ପିଉଥିଲେ । ଗାନ୍ଧିଜୀଙ୍କ ବିଚାରଧାରା ଓ ତାଙ୍କ ଆଦର୍ଶରେ କାର୍ଯ୍ୟ କରୁଥିଲେ କୃତାର୍ଥ ବାବୁ । ସମ୍ବଲପୁର ଅଞ୍ଚଳର ସ୍ୱାଧୀନତା ସଂଗ୍ରାମୀମାନଙ୍କ ସହ ତାଙ୍କର ଘନିଷ୍ଠ ଯୋଗସୂତ୍ର ଥିଲା । ଏଣୁ ଇଂରେଜ ପୋଲିସ ତାଙ୍କ ଘର ବାରମ୍ବାର ଖାନ୍ତଲାସ କରୁଥିଲେ । ଏପରିକି ସ୍ୱାଧୀନତା ଆନ୍ଦୋଳନକୁ ସାହାଯ୍ୟ କରୁଥିବାରୁ ତାଙ୍କ ନାମରେ ମୋକଦ୍ଦମା ମଧ୍ୟ ହୋଇଥିଲା । ପିତାମାତା ତ ନଥିଲେ । ପତ୍ନୀ ବିୟୋଗ ହୋଇଯାଇଥିଲା । ଚରଖା ଆନ୍ଦୋଳନରେ ଭାଗ ନେଇ ବଡ଼ଭାଇ କୃତାର୍ଥବାବୁ ଭଉଣୀମାନଙ୍କ ଦେଖାଶୁଣା କରିପାରୁନଥିଲେ । ତେଣୁ ନିଜର ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ସେ କଟାପାଲୀର ଚଞ୍ଚଳା ଦେବୀଙ୍କୁ ଦ୍ୱିତୀୟ ବିବାହ କଲେ । ବୁଣାକାରମାନଙ୍କଠାରୁ ଖଦୀ ଲୁଗା ଆଣି ସେ ତା'ର ବିକ୍ରିବଟାର ବ୍ୟବସ୍ଥା କଲେ । ଏଥିପାଇଁ ୧୯୩୦ ମସିହାରେ ବରଗଡ଼ଠାରେ ସେ ପ୍ରତିଷ୍ଠା କଲେ 'ସମ୍ବଲପୁରୀ ବସ୍ତ୍ରାଳୟ' । ଭଡ଼ା ଘରେ ଗୋଟିଏ ପଟରେ ପରିବାର ଓ ଅନ୍ୟ

ବଖରାରେ ବସ୍ତ୍ରାଳୟ କାର୍ଯ୍ୟ ଚାଲୁଥିଲା । ବୁଣାକାରମାନଙ୍କଠାରୁ ଖଦୀ ବସ୍ତ୍ର ଆଣିବା ବ୍ୟତୀତ ସେମାନଙ୍କୁ ବସ୍ତ୍ରର ବିଭିନ୍ନ ଡ଼ିଜାଇନ ଓ ରଙ୍ଗ କାମ ବିଷୟରେ ମଧ୍ୟ କୃତାର୍ଥ ବାବୁ ପରାମର୍ଶ ଦେଉଥିଲେ । ହରିଜନ ବୁଣାକାରମାନଙ୍କୁ ମଦ୍ୟ ମାଂସଠାରୁ ଦୂରେଇ ରଖିବାକୁ ଉଦ୍ୟମ କରି ସେ ସଫଳ ହୋଇଥିଲେ ।

ନିଜେ ହାଣ୍ଡିରେ ବିଭିନ୍ନ ରଙ୍ଗ ପ୍ରସ୍ତୁତ କରୁଥିଲେ । ସମୟେ ସମୟେ ସେ ଗାଁମାନଙ୍କୁ ଯାଇ ନୂତନ ହସ୍ତତନ୍ତ ବସ୍ତ୍ର ବିକ୍ରୀ କରୁଥିଲେ । ଖଦୀ କାମରେ ବ୍ୟସ୍ତ ରହି ସେ ଟିଉସନ କରିବା ଛାଡିଦେଲେ । ଦିନକୁ ଦିନ ସମ୍ବଲପୁରୀ ବସ୍ତ୍ରର ଆଦର ବଢ଼ିବାକୁ ଲାଗିଲା । ସମ୍ବଲପୁରରେ ଗୋଟିଏ ବସ୍ତ୍ର ବିକ୍ରୟ କେନ୍ଦ୍ର ମଧ୍ୟ ସ୍ଥାପନ କଲେ । ତୋରା ଛକଠାରେ ସ୍ଥାପିତ ହେଲା ଦୁଇଟି ବୁଣାଳୀ କେନ୍ଦ୍ର । ବ୍ୟବସାୟ ଭଲ ଚାଲିଲେ ମଧ୍ୟ ତାଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି ହୋଇ ନଥାଏ । କାରଣ ବୁଣାକାରମାନଙ୍କୁ ସେ ଉଚିତ ପ୍ରାପ୍ୟ ଦେଇ ନିଜ ପାଇଁ ଯତ୍‌କିଞ୍ଚିତ୍ ଲାଭାଂଶ ରଖୁଥିଲେ । ବୟନ ଶିଳ୍ପରେ ତାଙ୍କର ଦକ୍ଷତା ବିଷୟ ଶୁଣି ସୋନପୁର ରାଜା ନିଜ ରାଜ୍ୟରେ ଏହାର ପ୍ରସାର ପାଇଁ କୃତାର୍ଥ ବାବୁଙ୍କୁ ନିମନ୍ତ୍ରଣ କରିଥିଲେ । ୧୯୪୫ ମସିହାରେ ସେଠାରେ ସେ ଏକ 'ବସ୍ତ୍ର ବୟନ କେନ୍ଦ୍ର' ସ୍ଥାପନ କରିଥିଲେ । ଦ୍ୱିତୀୟ ବିଶ୍ୱ ଯୁଦ୍ଧ ସମୟରେ ସେ ବହୁ ପରିମାଣରେ ବସ୍ତ୍ର ବୟନ କରି ଲୋକଙ୍କର ଚାହିଦା ମେଣ୍ଟାଇଥିବାରୁ ଇଂରେଜ ସରକାର ତାଙ୍କ ଉପରେ ଖୁସିହୋଇ ଯାଇଥିଲେ । ତେଣୁ ତାଙ୍କୁ ୧୯୪୫, ଜୁନ୍ ୧୪ ତାରିଖରେ 'ରାୟ ସାହେବ' ଉପାଧି ପ୍ରଦାନ କରାଯାଇଥିଲା ।

ବୁଣାକାରମାନଙ୍କ ସହିତ ଘନିଷ୍ଠ ସଂପର୍କ ଯୋଗୁଁ ସେ ସେମାନଙ୍କ ଦୁର୍ବଳ ଆର୍ଥିକ ଅବସ୍ଥା ଉପଲବ୍ଧି କରି ପାରିଥିଲେ । ସେମାନଙ୍କ ଉତ୍ପାଦିତ ବୟନ ସାମଗ୍ରୀକୁ ନେଇ ଲାଭବାନ ହେଉଥିଲେ ମୁଷ୍ଟିମେୟ ପୁଞ୍ଜି ଲଗାଣକାରୀ ଥିଲାବାଲା ଲୋକ । ଏ କଥାକୁ ଲକ୍ଷ୍ୟ କରି ୧୯୪୫ ମସିହାରେ ସେ ବୁଣାକାର ଓ ଏହି ସଂପର୍କୀୟ ବ୍ୟବସାୟୀମାନଙ୍କୁ ନେଇ ଗଠନ କଲେ, 'ସମ୍ବଲପୁରୀ-ବସ୍ତ୍ରାଳୟ ସମିତି ଲିଃ' । ଏହାଦ୍ୱାରା ଅନୁଷ୍ଠାନର କର୍ମଚାରୀ, ବୁଣାକାର, ପୁଞ୍ଜିଲଗାଣକାରୀ ବ୍ୟକ୍ତିବିଶେଷ ସମସ୍ତେ ଲାଭବାନ ହେଲେ । କୃତାର୍ଥ ବାବୁଙ୍କର ଏହି ପଦକ୍ଷେପ ଯୋଗୁଁ ତାଙ୍କୁ କେତେକ ମୂର୍ଖ ଓ ପାଗଳ ବୋଲି କହିଲେ । ନିଜ ପରିବାର ଲୋକେ ମଧ୍ୟ ବିରୋଧ କଲେ । ତଥାପି ନିଜ ନିଷ୍ପତ୍ତିରେ ସେ ଅଟଳ ରହିଥିଲେ । ସମବାୟ ବସ୍ତ୍ର ଭଣ୍ଡାର ଦ୍ୱାରା ବିଶେଷ ଉପକୃତ ହୋଇଥିଲେ ଗରିବ ବୁଣାକାର ଭାଇମାନେ । ସମବାୟ ଭିତ୍ତିରେ ପରିଚାଳିତ ହେବାରୁ ସମ୍ବଲପୁରୀ ବସ୍ତ୍ରର ଆଦର ଦିନକୁ ଦିନ ବଢ଼ିବାକୁ ଲାଗିଲା । ଏଥିରେ ଉତ୍ସାହିତ ହୋଇ ନୂଆନୂଆ କୌଶଳରେ ବିଭିନ୍ନ ନାମ ଓ ଛବି ଦେଇ ଶାଢୀ ପ୍ରସ୍ତୁତ କଲେ କୃତାର୍ଥ ବାବୁ । ଶାଢ଼ୀଗୁଡିକର ନୂଆ ନାମ ଥିଲା ଅର୍ଚ୍ଚନା, ଅନୁରାଧା, ଚିତ୍ରୋତ୍ପଳା, ଗଜଲକ୍ଷ୍ମୀ ଓ ତଅପୋଇ ଇତ୍ୟାଦି । ସେ ଗୁଡିକରେ ମୃଗ, ମୟୂର, ହସ୍ତୀ, ମନ୍ଦିର ଓ ବୁଦ୍ଧ ମୂର୍ତ୍ତି ଆଦି ଅଙ୍କନ କରାଗଲା । ତାଙ୍କ ଦ୍ୱାରା ପ୍ରସ୍ତୁତ 'ଶକ୍ତାପୁରୀ' ଶାଢ଼ୀକୁ ମିଳିଥିଲା ରାଷ୍ଟ୍ରୀୟ ପୁରସ୍କାର । କ୍ରମେ କୃତାର୍ଥ ବାବୁଙ୍କ ଅଭିନବ କାର୍ଯ୍ୟପ୍ରଣାଳୀ ରାଜ୍ୟସ୍ତର ଅତିକ୍ରମ କରି ରାଷ୍ଟ୍ରୀୟ ସ୍ତରରେ ପ୍ରଚାରିତ ହେଲା । ପାରମ୍ପରିକ ବୟନ ଶିଳ୍ପର ଉନ୍ନତି ତଥା ଅବହେଳିତ ବୁଣାକାରମାନଙ୍କ ଆର୍ଥିକ ମାନଦଣ୍ଡରେ ସୁଧାର ଆଣି ସେ ଅଧିକ ପ୍ରଶଂସିତ ହେବାକୁ ଲାଗିଲେ । ଭାରତ ସରକାର ତାଙ୍କୁ ୧୯୬୫ ମସିହା ମଇ ୨୦ତାରିଖରେ ପ୍ରଦାନ କଲେ 'ପଦ୍ମଶ୍ରୀ' ଉପାଧି । ଜଣେ ସମବାୟବିତ୍ ଭାବରେ ସେ ରାଜ୍ୟ 'ସମବାୟ ସମିତି'ର ଅଧ୍ୟକ୍ଷ ରୂପେ ନିର୍ବାଚିତ ହୋଇ ଦୀର୍ଘ ଦିନ ଧରି ଦାୟିତ୍ୱ ତୁଲାଇଥିଲେ । ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠିତ 'ଅଲ୍-ଇଣ୍ଡିଆ, ହ୍ୟାଣ୍ଡଲୁମ୍ ବୋର୍ଡ'ର ଜଣେ ବିଶିଷ୍ଟ ସଭ୍ୟ ରୂପେ ମଧ୍ୟ ତାଙ୍କୁ ଗ୍ରହଣ କରାଯାଇଥିଲା । କେବଳ ବୁଣାକାର ନୁହେଁ କୃଷକମାନଙ୍କ ଉନ୍ନତି ନିମନ୍ତେ ମଧ୍ୟ ସେ ସଚେଷ୍ଟ ଥିଲେ । କୃଷକମାନଙ୍କୁ ବ୍ୟବସାୟୀମାନଙ୍କ ଠକାମୀ ଓ ଶୋଷଣରୁ ମୁକ୍ତ କରିବା ପାଇଁ ସେ ଗଠନ କରିଥିଲେ 'କୃଷକ ଟ୍ରେଡିଂ କମ୍ପାନୀ' । ଏହାଦ୍ୱାରା ଅଭାବଗ୍ରସ୍ତ କୃଷକ ପରିବାରଙ୍କ ଅବସ୍ଥା ସ୍ୱଚ୍ଛଳ ହୋଇପାରିଥିଲା । ସେହିପରି

ବରଗଡ଼ ନିକଟସ୍ଥ ତୋରାଠାରେ, ସେ ସମବାୟ ଭିତ୍ତିରେ ସ୍ଥାପନ କରିଥିଲେ ଚିନିକଳ ଓ ସୂତାକଳ ।

ପ୍ରତିକୂଳ ଅବସ୍ଥାରେ ପଡ଼ି କୃତାର୍ଥ ବାବୁ ନିଜେ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇଥିଲେ ମଧ୍ୟ ଶିକ୍ଷାର ମହତ୍ତ୍ୱ ହୃଦୟଙ୍ଗମ କରିପାରିଥିଲେ । ତେଣୁ ସେ ବହୁ ଦରିଦ୍ର ତଥା ମେଧାବୀ ଛାତ୍ରଙ୍କୁ ଆର୍ଥିକ ସହାୟତା କରୁଥିଲେ । କିନ୍ତୁ ଏକଥା ସେ ବାହାରେ ପ୍ରକାଶ କରୁନଥିଲେ । ସେ ମଧ୍ୟ ଗୀତାର ଅନୁବାଦ ଛପେଇ ସୁଲଭ ମୂଲ୍ୟରେ ବିତରଣ କରିଥିଲେ । ସମ୍ବଲପୁର ଅଞ୍ଚଳରେ  ଶିକ୍ଷାର ପ୍ରସାର ପାଇଁ ସମ୍ବଲପୁରୀ ବସ୍ତ୍ରାଳୟ ତରଫରୁ ଅନେକ ଶିକ୍ଷାନୁଷ୍ଠାନ ସ୍ଥାପନ କରିଥିଲେ କୃତାର୍ଥ ବାବୁ । ତାଙ୍କରି ପ୍ରଚେଷ୍ଟାରେ ବରଗଡ଼ ପଞ୍ଚାୟତ ମହାବିଦ୍ୟାଳୟ, ବରପାଲି ଉଚ୍ଚ ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ଥାପିତ ହୋଇ ସ୍ଥାନୀୟ ଛାତ୍ରଛାତ୍ରୀଙ୍କ ଉଚ୍ଚଶିକ୍ଷାରେ ଯଥେଷ୍ଟ ସହାୟକ ହୋଇପାରିଥିଲା । କୃତାର୍ଥ ବାବୁଙ୍କ ଉଦ୍ୟମ କ୍ରମେ ଢୋଲାଠାରେ ଏକ ଉଚ୍ଚ ବିଦ୍ୟାଳୟ ମଧ୍ୟ ସ୍ଥାପିତ ହୋଇଥିଲା । ପଦ୍ମପୁର ଆଞ୍ଚଳିକ କଲେଜ, ଆଞ୍ଚଳିକ ବାଣିଜ୍ୟ ସମିତି ବରଗଡ଼, ସମ୍ବଲପୁର ଜିଲ୍ଲା କେନ୍ଦ୍ର ସମବାୟ ସମିତି, ବରଗଡ଼ ସମବାୟ ସମିତି, ବରଗଡ଼ ମହିଳା କଲେଜ, ତୋରାସ୍ଥିତ ବୁଣାକାର ସୂତାକଳ, କୃଷ୍ଣଚନ୍ଦ୍ର ଇଂରାଜୀ ସ୍କୁଲ, ବରଗଡ଼ ଚିନିକଳ ଇତ୍ୟାଦି ପ୍ରତିଷ୍ଠା କରିବାରେ କୃତାର୍ଥ ବାବୁଙ୍କର ନିଷ୍ଠାପର ଉଦ୍ୟମ ଉଲ୍ଲେଖନୀୟ । ବରଗଡ଼ସ୍ଥିତ ସମବାୟ ପ୍ରଶିକ୍ଷଣ ବିଦ୍ୟାଳୟକୁ ଏବେ ତାଙ୍କରି ନାମରେ ନାମିତ କରାଯାଇଛି ।

ସେ ସ୍ଥାପନ କରିଥିବା ସମବାୟ ସମିତିଗୁଡିକରେ ସାତ ହଜାର ବୁଣାକାର ସଦସ୍ୟ ରୂପେ ତାଲିକାଭୁକ୍ତ ହୋଇଥିଲେ । ଏକଦା ଏହା ଭାରତର ଦ୍ୱିତୀୟ ବୃହତ୍ତମ ସମବାୟ ସମିତି ଭାବେ ପ୍ରସିଦ୍ଧି ଲାଭ କରିଥିଲା । କୃତାର୍ଥ ବାବୁଙ୍କର ସାମଗ୍ରିକ ମହାନ୍ କାର୍ଯ୍ୟାବଳୀ ଯୋଗୁଁ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ୧୯୭୫ ମସିହା ଏପ୍ରିଲ ୧୨ ତାରିଖରେ ‘ ଡି. ଲିଟ୍ ’ ଉପାଧିରେ ସମ୍ମାନିତ କରିଥିଲେ । ଜଣେ ସମବାୟ ବିଶେଷଜ୍ଞ ରୂପେ ତାଙ୍କୁ ମାନପତ୍ର ଓ ଉପାୟନ ଦେଇ ସମ୍ମାନିତ କରିଥିଲେ ‘ଓଡ଼ିଶା ସମବାୟ ୟୁନିୟନ୍’ । ଆଜୀବନ ଖଦଡ଼ ବସ୍ତ୍ର ପରିଧାନ କରୁଥିବା କୃତାର୍ଥ ଆଚାର୍ଯ୍ୟଙ୍କ ଜୀବନ ଥିଲା ସଂଘର୍ଷମୟ । ତାଙ୍କର ମଧୁର ଆଳାପ, ମିଷ୍ଟ ଭାଷା ଓ ଅମାୟିକ ବ୍ୟବହାରରେ ସେ ସମସ୍ତଙ୍କୁ ବିମୋହିତ କରିପାରୁଥିଲେ ।‘ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହେଲେ ବି ମରଇ’ । ଗାନ୍ଧି, ଗୋପବନ୍ଧୁ, ନେହେରୁ ତ କାଳ କବଳରେ ସେପାରିକୁ ଯାଇଛନ୍ତି । ସେହିପରି ମହାକାଳର ଆହ୍ୱାନରେ ସେପାରିକୁ ଚାଲିଗଲେ କୃତାର୍ଥ ବାବୁ । ବରଗଡ ଜିରା ନଦୀ କୂଳରେ ରଚିତ ହେଲା ଏହି କର୍ମଯୋଗୀଙ୍କର ମହାସମାଧି । ଏକ ଦରିଦ୍ର ପରିବାରରେ ଜନ୍ମଲାଭ କରି ଶତଶତ ଦରିଦ୍ରମାନଙ୍କ ଉନ୍ନତି ପାଇଁ ସେ ଯେଉଁ ମହନୀୟ କାର୍ଯ୍ୟ କରିଯାଇଛନ୍ତି, ସେଥିପାଇଁ ସ୍ମରଣୀୟ ରହିଥିବେ କୃତାର୍ଥ ଆଚାର୍ଯ୍ୟ ।

ତାଙ୍କର ସୁପୁତ୍ର ଆନନ୍ଦ ଆଚାର୍ଯ୍ୟ ଓ ପ୍ରସନ୍ନ ଆଚାର୍ଯ୍ୟ ମଧ୍ୟ ନିଜ ନିଜର ପରୋପକାର ମନୋଭାବ, ସେବା ବ୍ରତ ନିମନ୍ତେ ଜନସାଧାରଣଙ୍କ ଆଦରଣୀୟ ହୋଇ ରାଜ୍ୟ ତଥା ରାଷ୍ଟ୍ର ରାଜନୀତିରେ ସଫଳତା ହାସଲ କରିଛନ୍ତି । ସେମାନେ ନିଜ ପିତାଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ବରଗଡ଼ରେ ଏକ ଇଂଜିନିୟରିଂ କଲେଜ ସ୍ଥାପନ କରି ପଶ୍ଚିମ ଓଡ଼ିଶାର ଗରିବ ମେଧାବୀ ଛାତ୍ରଛାତ୍ରୀଙ୍କ ଉଚ୍ଚ ଶିକ୍ଷାର ପଥ ସୁଗମ କରିଛନ୍ତି ।

ସମ୍ପାଦକ, ‘ଆମେ ଓଡ଼ିଆ’
ଆର୍.ପି ୧୨୫, ପାଣ୍ଡବ ନଗର
ଭୁବନେଶ୍ୱର



# ଶ୍ରମିକ ଶ୍ରେଣୀ – କାଲି ଓ ଆଜି

ଜୟନ୍ତ କୁମାର ଦାସ

ଯେ କୌଣସି ସମାଜ, ରାଜ୍ୟ ଓ ଦେଶ ଗଠନରେ ଶ୍ରମଜୀବୀଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ । ସେମାନଙ୍କ ଉଦ୍ୟମ, ପ୍ରଚେଷ୍ଟା ଓ ଶ୍ରମଦାନ ଜରିଆରେ ସମଗ୍ର ମାନବ ସମାଜର ବିକାଶ ସାଧନ ହୁଏ । ସେ କୃଷିକ୍ଷେତ୍ର ହେଉ, କୁଟୀରଶିଳ୍ପ ହେଉ ଅବା ବୃହତ୍ ଶିଳ୍ପ ହେଉ । ଦେଶ ଗଠନରେ ପ୍ରମୁଖ ଭୂମିକା ନିଭାଉଥିବା ଶ୍ରମିକ ଭାଇଭଉଣୀମାନଙ୍କ ଅଧିକାର ଓ ଗୁରୁତ୍ୱକୁ ଉପଲବ୍ଧି କରି ୧୮୯୦ ମସିହାରୁ ପ୍ରତିବର୍ଷ ମେ ପହିଲା ତାରିଖ 'ଆନ୍ତର୍ଜାତିକ ଶ୍ରମିକ ଦିବସ' ରୂପେ ପାଳନ ହୋଇଆସୁଛି । ଏହା ପଛରେ ରହିଛି ଦୁଃଖଦ ଘଟଣାବଳୀ ।

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରୁ ନିର୍ଯାତନା ଭୟରେ ଶ୍ରମିକମାନଙ୍କୁ ୧୨ରୁ ୧୬ ଘଣ୍ଟା ପର୍ଯ୍ୟନ୍ତ ଖଟିବାକୁ ପଡୁଥିଲା । ପୁଞ୍ଜିପତିମାନଙ୍କର ତିଳେମାତ୍ର ଦୟା ମନୋଭାବ ନଥିଲା । ପଶୁପରି ଖଟି ଶ୍ରମିକମାନେ ଅକାଳ ବାର୍ଦ୍ଧକ୍ୟର ଶିକାର ହେଉଥିଲେ ଓ ଦୁଃସାଧ ରୋଗରେ ପୀଡ଼ିତ ହୋଇ ଅନେକ ମୃତ୍ୟୁବରଣ କରୁଥିଲେ । ସମାଜର ନିମ୍ନସ୍ତରରେ ଥିବା ଏହି ଶ୍ରମିକମାନଙ୍କ ଜୀବନ କାହାଣୀ ଥିଲା ଅତ୍ୟନ୍ତ ହୃଦୟ ବିଦାରକ । କାଳକ୍ରମେ ଶୋଷଣରୁ ରକ୍ଷା ପାଇବା ପାଇଁ ନିଷ୍ପେଷିତ ଶ୍ରମିକମାନଙ୍କ ମନରେ ଆନ୍ଦୋଳନ ଦାନା ବାନ୍ଧିଲା । କାର୍ଲମାକ୍ସଙ୍କ ଶ୍ରମ ଦର୍ଶନରେ ପ୍ରଭାବିତ ହୋଇ ଶ୍ରମିକ ସଂଗଠନ ଦୈନିକ ଆଠଘଣ୍ଟା କାର୍ଯ୍ୟ ନିର୍ଦ୍ଧାରଣ କରିବା ଦାବିରେ ପୁଞ୍ଜିପତିମାନଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଆରମ୍ଭ କଲେ । ୧୮୮୪ ମସିହାରେ ଆମେରିକା ଫେଡ଼େରେସନ୍ ଅଫ୍ ଲେବର ନିଷ୍ପତ୍ତି କ୍ରମେ ପ୍ରାୟ ଛଅଲକ୍ଷ ଶ୍ରମିକ ୧୮୮୬ ମେ ୧ ତାରିଖ ଦିନ ରାଜରାସ୍ତାକୁ ଓହ୍ଲାଇଲେ । ଆମେରିକାର ଚିକାଗୋ ସହର ଥିଲା ଏହି ଧର୍ମଘଟର କେନ୍ଦ୍ରସ୍ଥଳୀ । ଚାରିଆଡ଼େ ପୁଲିସ ଛାଉଣୀ ହୋଇଥାଏ । ହେ–ମାର୍କେଟ ଛକ ଲୋକାରଣ୍ୟ ହୋଇ ପଡ଼ିଥାଏ । ବିକ୍ଷୋଭକାରୀଙ୍କୁ ଦମନ କରିବା ପାଇଁ ପୋଲିସର ଲାଠିମାଡ଼ ଓ ଗୁଳି ବର୍ଷଣ ଆରମ୍ଭ ହେଲା । ଏଥିରେ ୬ ଜଣ ଶ୍ରମିକ ମୃତ୍ୟୁବରଣ କରିବା ସହ ଅନେକ ଶ୍ରମିକ ଗୁରୁତର ଆହତ ହେଲେ । ଆଡ଼ଲଫ ଫିସର, ଜର୍ଜ ଏଙ୍ଗେଲ୍ସ, ଏ.ଆର୍.ପାରସନସ୍, ଅଗଷ୍ଟ ସ୍ପାଇଜ, ଓସ୍କାର ନିବେ ଆଦି ପ୍ରମୁଖ ଶ୍ରମିକ ନେତାଙ୍କ ବିରୁଦ୍ଧରେ ମିଥ୍ୟା ମକଦ୍ଦମା ରୁଜୁ କରାଗଲା ଓ ବିଚାରରେ ୭ ଜଣ ଶ୍ରମିକ ନେତାଙ୍କୁ ଫାଶୀଦଣ୍ଡ ସମେତ ଜଣଙ୍କୁ ୧୫ବର୍ଷ କାରାଦଣ୍ଡରେ ଦଣ୍ଡିତ କରାଗଲା । ଏହି ଆନ୍ଦୋଳନ ଫଳରେ ଶ୍ରମିକମାନେ ଐକ୍ୟବଦ୍ଧ ହେବାର ସୁଯୋଗ ପାଇଲେ ଓ ପରବର୍ତ୍ତୀ ସମୟରେ ଏହି ଅସ୍ତ୍ରକୁ ଆଉ ହାତଛଡ଼ା କରିନଥିଲେ ।

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଆମ ଦେଶରେ ଶିଳ୍ପ ବିପ୍ଳବ ନାମରେ ପୁଞ୍ଜିବାଦମାନେ ଆଧିପତ୍ୟ ବିସ୍ତାର କରିବା ଆରମ୍ଭ କଲେ । ପ୍ରାରମ୍ଭିକ ପର୍ଯ୍ୟାୟରେ ଶ୍ରମିକମାନେ ଅଣକୁଶଳୀ ଥିଲେ ଓ ଏହାର ଫାଇଦା ନେଇ ପୁଞ୍ଜିବାଦମାନେ ଶ୍ରମିକମାନଙ୍କୁ ଶୋଷଣ

କରିବାକୁ ଲାଗିଲେ । ଅନିୟମିତ କାର୍ଯ୍ୟ ନିର୍ଘଣ୍ଟ, ଶିଳ୍ପପତିଙ୍କର ହେୟ ମନୋଭାବ, ଶିଶୁ ଓ ମହିଳା ଶ୍ରମିକଙ୍କ ପ୍ରତି ଅକଥନୀୟ ନିର୍ଯାତନା ଓ କମ୍ ମଜୁରି ଶ୍ରମିକମାନଙ୍କୁ ଏକତ୍ର ହେବାର ଖୋରାକ ଯୋଗାଇଲା । ଆନ୍ତର୍ଜାତିକ ଶ୍ରମ ସଂଗଠନ ମୌଳିକ ମାନବିକ ଅଧିକାର ସୁରକ୍ଷା ଉପରେ ଗୁରୁତ୍ୱ ଦେବା ପ୍ରସଙ୍ଗରେ କହିଛି ଯେ ପ୍ରତ୍ୟେକ ଶ୍ରମିକ ସ୍ୱଇଛାରେ ଯେ କୌଣସି ଶ୍ରମିକ ସଂଗଠନରେ ଯୋଗଦେଇ ପାରିବେ ଓ ସଂଗଠନ ଗଢ଼ିପାରିବେ, ଗୋତି ଶ୍ରମିକ ଓ ଦାସ ପ୍ରଥାରୁ ମୁକ୍ତ ହେବାର ଅଧିକାର ପାଇବେ, ପ୍ରତ୍ୟେକ ଶିଶୁର ମଧ ଅଧିକାର ରହିଛି ଓ ଜାତି, ବର୍ଣ୍ଣ, ଧର୍ମ, ଲିଙ୍ଗ ଭିତ୍ତିରେ କୌଣସି ଭେଦଭାବ କରାଯାଇ ପାରିବ ନାହିଁ ।

ମୁକ୍ତ ଅର୍ଥନୀତି ଯୁଗରେ ଶ୍ରମିକମାନେ ଅବହେଳିତ ଓ ନିର୍ଯାତିତ ହେବାର ବିଭିନ୍ନ ଦୃଷ୍ଟାନ୍ତ ଗଣମାଧମ ଜରିଆରେ ପ୍ରାୟ ଦେଖିବାକୁ ମିଳୁଛି । ଶିଶୁ ଓ ମହିଳା ଶ୍ରମିକ ସବୁଠାରୁ ବେଶି ଉପେକ୍ଷିତ ହେଉଛନ୍ତି । କେବଳ ଆମ ଦେଶରେ ନୁହେଁ, ଅନେକ ଦେଶରେ ମଧ ଅନୁରୂପ ଅବସ୍ଥା । ସମାନ କାମ କରି ମଧ ଆନୁପାତିକ ଭାବେ କମ୍ ମଜୁରି ପାଉଛନ୍ତି ଓ ଆପତ୍ତି ଅଭିଯୋଗ କଲେ ମାଲିକମାନଙ୍କ ଦ୍ୱାରା ଶାରୀରିକ ଓ ମାନସିକ ଯନ୍ତ୍ରଣାର ଶିକାର ହେଉଛନ୍ତି । ଇଟାଭାଟି, ଖଣିଖାଦାନ, ଢାବା, ହୋଟେଲ, ବିଡି, ଦିଆସିଲି ଓ ବାଣ ବାରୁଦ କାରଖାନାରେ ଅତି ବିପଦଜନକ ଭାବେ କାମ କରୁଛନ୍ତି ବିଭିନ୍ନ ଆଇନ ପ୍ରଣୟନ ସତ୍ତ୍ୱେ । ସଂଗଠିତ କ୍ଷେତ୍ର ହେଉ ବା ଅଣ ସଂଗଠିତ କ୍ଷେତ୍ର ହେଉ ପ୍ରାୟ ସବୁଠି ଶ୍ରମିକ ଶୋଷଣର ଶିକାର ହେଉଛନ୍ତି । ଆମେ ଜାଣିଛେ, ପୁଞ୍ଜିପତିମାନଙ୍କ ଅର୍ଥ ନିବେଶ ଓ ଶ୍ରମିକମାନଙ୍କ ଶ୍ରମ ମିଶି ଦ୍ରବ୍ୟ ଉତ୍ପାଦନ ହୁଏ । କିନ୍ତୁ ଦିନରାତି ଖଟି ଶ୍ରମିକମାନେ ସେମାନଙ୍କ ଉଚିତ ପ୍ରାପ୍ୟରୁ ବଂଚିତ ହେଉଛନ୍ତି । ଶ୍ରମିକ କେବଳ ପେଟପୋଷିବା ଭଳି ମଜୁରି ପାଇଲେ ସମସ୍ୟାର ସମାଧାନ ହେବ ନାହିଁ, କାମ ପାଇଁ ତାଙ୍କୁ ପ୍ରାଣହୀନ ଯନ୍ତ୍ରଚାଳିତ କଳକାରଖାନା ବା ରୋବଟ ପରି ଯେପରି ଖଟିବାକୁ ନ ପଡ଼େ ସେଥିପ୍ରତି ଧ୍ୟାନ ଦେବା ବିଧେୟ । ଶ୍ରମିକମାନଙ୍କ ଅବସ୍ଥାର ପରିବର୍ତ୍ତନ ଆବଶ୍ୟକ । ଶ୍ରମିକଙ୍କ ସୁରକ୍ଷା ଓ ନ୍ୟାଯ୍ୟ ଦାବି ଉପସ୍ଥାପନ ପାଇଁ ଆମ ଦେଶରେ ଏଆଇଟିୟୁସି, ଆଇଏନ୍‌ଟିୟୁସି, ହିନ୍ଦ୍ ମଜଦୁର ସଭା, ସିଆଇଟିୟୁ, ୟୁଟିୟୁସି ଆଦି ପ୍ରମୁଖ ଶ୍ରମିକ ସଂଗଠନ ଗଠିତ ହୋଇଛି । ପର୍ଯ୍ୟବେକ୍ଷଣରୁ ଜଣାଯାଏ, ୨୦୨୧ରେ ଆମ ଦେଶରେ ମୋଟ ଶ୍ରମଶକ୍ତି ହେଉଛି ୪୭ କୋଟି, ଯାହାଙ୍କ ମଧରେ ନିର୍ମାଣ ଶ୍ରମିକ, କେନ୍ଦୁପତ୍ର, ବିଡି କାରିଗର, କୃଷି ଶ୍ରମିକ ଅନ୍ତର୍ଭୁକ୍ତ । ଯଦିଓ ଶ୍ରମିକ ସମ୍ପର୍କିତ ଅନେକ ଆଇନ ଆମ ଦେଶରେ ପ୍ରଣୟନ ହୋଇଛି ତଥାପି ବିଭିନ୍ନ ସମୟରେ ଶ୍ରମିକମାନେ ଆର୍ଥିକ ସମ୍ବଳ ଅଭାବରୁ କୋର୍ଟ କଚେରିର ଦ୍ୱାରସ୍ଥ ହୋଇପାରୁ ନାହାନ୍ତି । ବିଭିନ୍ନ ଆଇନ ମଧ୍ୟରୁ ସର୍ବନିମ୍ନ ମଜୁରି ପ୍ରଣୟନ ଆଇନ, ଶିଶୁ ଶ୍ରମିକ (ଉଚ୍ଛେଦ ଓ ନିୟନ୍ତ୍ରଣ) ଆଇନ, ମଟର ପରିବହନ ଶ୍ରମିକ ଆଇନ ଅନ୍ୟତମ । ଆମ ରାଜ୍ୟରେ ମଧ ଶ୍ରମିକ କଲ୍ୟାଣ ପାଇଁ ଉଦ୍ଦିଷ୍ଟ ସର୍ବନିମ୍ନ ମଜୁରି ପରାମର୍ଶଦାତା ବୋର୍ଡ଼, ଶ୍ରମ ପରାମର୍ଶଦାତା ବୋର୍ଡ଼, ନିର୍ମାଣ ଶ୍ରମିକ କଲ୍ୟାଣ ବୋର୍ଡ଼ ଗଠନ ହୋଇଛି ଓ ଶ୍ରମିକମାନଙ୍କ ସମସ୍ୟା ଓ ଏହାର ସମାଧାନ ପାଇଁ ବିଭିନ୍ନ ପଦକ୍ଷେପ ନିଆଯାଉଛି । ଶିଶୁଶ୍ରମିକ ପ୍ରଥା ବନ୍ଦ କରିବା ପାଇଁ ବିଦ୍ୟାଳୟମାନଙ୍କରେ ମାଗଣା ମଧ୍ୟାହ୍ନ ଭୋଜନ ସହିତ ବହିପତ୍ର, ପୋଷାକ ଆଦି ପ୍ରଦାନ କରାଯାଉଛି । ସମ୍ବିଧାନର ୪୫ ଧାରାରେ ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ ଓ ସାର୍ବଜନୀନ କରାଯାଇଛି। ସମ୍ବିଧାନର ୨୪, ୩୯ ଧାରାରେ ଶିଶୁଙ୍କୁ ଶୋଷଣମୁକ୍ତ କରିବା ପାଇଁ ମୌଳିକ ଅଧିକାର ବର୍ଣ୍ଣିତ ଅଛି । ପ୍ରତ୍ୟେକ ଜିଲାରେ ଶିଶୁ ସୁରକ୍ଷା ଅଧିକାରୀ ନିୟୋଜିତ ହେବା ସହ ଖିଲାପକାରୀଙ୍କ ବିରୁଦ୍ଧରେ ଆବଶ୍ୟକ ଦଣ୍ଡବିଧାନ କରାଯାଉଛି । ଆଇନ ଅନୁଯାୟୀ ବିପଦପୂର୍ଣ୍ଣ ସଂସ୍ଥାମାନଙ୍କରେ ୧୪ ବର୍ଷରୁ କମ୍ ପିଲାଙ୍କ ନିଯୁକ୍ତିକୁ ବେଆଇନ୍ ଘୋଷଣା କରାଯାଇଛି । ସରକାରଙ୍କ 'ସଭିଏଁ ପଢନ୍ତୁ ଓ ସଭିଏଁ ବଢ଼ନ୍ତୁ' ସର୍ବଶିକ୍ଷା

ଅଭିଯାନର ମୂଳ ଲକ୍ଷ୍ୟ । ମହିଳାମାନଙ୍କ ପାଇଁ ମଧ୍ୟ ଅନୁରୂପ ବ୍ୟବସ୍ଥା ରହିଛି । ସରକାରଙ୍କ ତରଫରୁ ବିଭିନ୍ନ ଥାନାରେ ମହିଳା ଓ ଶିଶୁ ଡେସ୍କ ଖୋଲାଯାଇଛି। ସମାନ କାମ ପାଇଁ ସମାନ ମଜୁରି ପ୍ରଚଳନ ହେଉଛି । ମହାମାରୀ କୋଭିଡ୍-୧୯ ସମୟରେ ଦାଦନ ଶ୍ରମିକଙ୍କ ରାସ୍ତାଘାଟରେ ଅସହାୟ ଅବସ୍ଥାକୁ ଲକ୍ଷ୍ୟ କରି ସେମାନଙ୍କ ସମସ୍ୟାର ଦୀର୍ଘମିଆଦୀ ସମାଧାନ ପାଇଁ ସରକାରଙ୍କ ତରଫରୁ ଆନୁଷଙ୍ଗିକ ତଥା ବିହିତ ପଦକ୍ଷେପ ନେବା ଅପରିହାର୍ଯ୍ୟ ହୋଇପଡ଼ିଛି । ଯେପରି ଭବିଷ୍ୟତରେ ଏହାର ପୁନରାବୃତ୍ତି ନ ହୁଏ । କାରଣ ଦାଦନ ଖଟିବାକୁ ଯାଇ ଅଧିକାଂଶ ସମୟରେ ଶ୍ରମିକ ବିଶେଷତଃ ଶିଶୁ ଓ ମହିଳା ଶ୍ରମିକମାନେ ଶାରୀରିକ ନିର୍ଯାତନାର ଶିକାର ହେଉଛନ୍ତି ।

ସୁସ୍ଥ ପରିବେଶରେ ବଞ୍ଚିବାର ଅଧିକାର ସମସ୍ତଙ୍କର ରହିଛି । ସେ ଶ୍ରମିକ ହେଉ ବା ପୁଞ୍ଜିପତି ହେଉ । ଶ୍ରମ ପାଇଁ ଉଚିତ ମଜୁରି ସେମାନଙ୍କ ଅଧିକାର । '' ହରିଜନ ଓ ନବଜୀବନ'' ପତ୍ରିକାରେ ଗାନ୍ଧିଜୀ ଏ ପ୍ରସଙ୍ଗ ଉପରେ ପର୍ଯ୍ୟାପ୍ତ ଆଲୋଚନା କରିଛନ୍ତି । ଟ୍ରଷ୍ଟିସିପ୍ କଥା ଉଲ୍ଲେଖ କରିଛନ୍ତି । ଶ୍ରମର ମର୍ଯ୍ୟାଦାକୁ ଗୁରୁତ୍ୱ ଦେବା ପାଇଁ ଗାନ୍ଧିଜୀଙ୍କ ପରିକଳ୍ପିତ ମୌଳିକ ଶିକ୍ଷା ଶ୍ରମଭିତ୍ତିକ ଶିକ୍ଷା ଭାବେ ପରିଗଣିତ ହେଉଥିଲା । ଗାନ୍ଧିଜୀଙ୍କ ଭାଷାରେ ରାଜନୈତିକ ସ୍ୱାଧୀନତା ଅସଲ ସ୍ୱାଧୀନତା ନୁହେଁ। ଯେପର୍ଯ୍ୟନ୍ତ ସାମାଜିକ ଓ ଅର୍ଥନୈତିକ ସ୍ୱାଧୀନତା ନ ଆସିଛି, ସେପର୍ଯ୍ୟନ୍ତ ଦେଶ ସ୍ୱାଧୀନ ହୋଇନାହିଁ ବୋଲି ବିଚାରିବାକୁ ହେବ । ଶ୍ରେଣୀବିହୀନ ଓ ଶୋଷଣମୁକ୍ତ ସମାଜ ଗଠନ ହେଲେ ହିଁ ନିମ୍ନତମ ସ୍ତରରେ ଥିବା ଲୋକଟି ସ୍ୱାଧୀନତାର ସ୍ୱାଦ ଚାଖିପାରିବ ।

ସମୟ ଆସିଛି ଶ୍ରମିକମାନେ ସଚେତନ ହେବା ଆବଶ୍ୟକ । ସଚେତନ ହୋଇପାରିଲେ ହିଁ ଶୋଷଣ ଓ କଷଣରୁ ମୁକ୍ତି ମିଳିବ । ମଣିଷ ଅପେକ୍ଷା ମଣିଷର ଶ୍ରମ ଅଧିକ ମହତ୍ତ୍ୱପୂର୍ଣ୍ଣ, ଏହାକୁ ଭୁଲିଯିବା ଉଚିତ ନୁହେଁ । ପୁଞ୍ଜିବାଦମାନଙ୍କର ଅନ୍ୟାୟ ଓ ଅତ୍ୟାଚାର ବିରୁଦ୍ଧରେ ସଂଗ୍ରାମ ହିଁ ଶ୍ରମିକ ଶ୍ରେଣୀର ଏକମାତ୍ର ଅସ୍ତ୍ର । 'Workers of all lands Unite' ଅର୍ଥାତ୍, 'ଦୁନିଆର ମଜଦୁର ଏକ ହୁଅ'- ମହାମନ୍ତ୍ର ହେଉଛି ସେମାନଙ୍କର ରକ୍ଷାକବଚ ।

ପଟିଆ, ଭୁବନେଶ୍ୱର-୩୧



# ଭାରତୀୟ ସନ୍ଥ ପରମ୍ପରାର ଅନନ୍ୟ ପ୍ରତିଭା: ସନ୍ଥକବି ଭୀମଭୋଇ

ଡକ୍ଟର ପ୍ରମୋଦିନୀ ଜେନା

ସ୍ରଷ୍ଟା ଓ ସୃଷ୍ଟି, ବିଧାନ ଓ ବିଧାତାର ସଂପର୍କ ଅତ୍ୟନ୍ତ ନିବିଡ଼ । ବନ୍ଧନ ଅତ୍ୟନ୍ତ ଦୃଢ଼ । ଶତ ସହସ୍ର ଆକାର ଇଙ୍ଗିତ ଓ ସୂଚନା ସଂକେତ ମଧ୍ୟ ଦେଇ ସୃଷ୍ଟିର ଅନ୍ତର୍ଦ୍ଦେଶରେ ସ୍ରଷ୍ଟାର ଆତ୍ମାପୁରୁଷଟିର ଚିନ୍ମୟ ବିଳାସ ପ୍ରତି ମୁହୂର୍ତ୍ତରେ ପରିସ୍ଫୁଟ । ସାଧୁସନ୍ଥଙ୍କର ଅଭିନବ ସୃଷ୍ଟି ବି ଏ ନିୟମର ବହିର୍ଭୂତ ନୁହେଁ । ସାଧୁ ସନ୍ଥଙ୍କର ଚରିତ୍ର ରସ ପ୍ରବାହ ମଧ୍ୟରେ ସନ୍ଥ ପ୍ରାଣ ସୂକ୍ଷ୍ମ ଧାରାଟିକୁ ଧରିପାରିବା ସନ୍ଧାନୀ ସମାଲୋଚକ ବ୍ୟତୀତ ଅନ୍ୟ ପକ୍ଷରେ ଆଦୌ ସମ୍ଭବପର ନୁହେଁ । ମଣିଷ ଅମୃତର ସନ୍ତାନ । ଅମରତ୍ୱ ହିଁ ତା'ର ଭାଗ୍ୟଲିପି । ଦୁନିଆର କୌଣସି ପାର୍ଥିବ ଶକ୍ତି ଯେତେ ବଡ଼ ହେଉନା କାହିଁକି, ତାକୁ ଏଥିରୁ କସ୍ମିନ୍ କାଳେ ବଞ୍ଚିତ କରିପାରିବ ନାହିଁ ।

ଚିର ଜଞ୍ଜାଳମୟ ଜୀବନରେ ସ୍ନେହ, ସହାନୁଭୂତିର ପଦେ ଆହା ବାଣୀ, ଆଶା, ଆଶ୍ୱାସନାରେ ପଦେ ମିଠାକଥା ଦେବତାଙ୍କର ଆଶୀର୍ବାଦ ଭଳି ସୁଖକର ଓ ଅତ୍ୟାବଶ୍ୟକ ମନେ ହୋଇଥାଏ । ଦେଶର ଏକ ଶୁଭ ମୁହୂର୍ତ୍ତରେ ଉତ୍କଳର ବାଣୀ ମଞ୍ଚରେ ଅବତୀର୍ଣ୍ଣ ହୋଇ ଧର୍ମପ୍ରଚାର ସଞ୍ଚାଳକ ସନ୍ଥକବି ଭୀମଭୋଇ ଜାତୀୟ ଜୀବନର ଏକ ଅମଳିନ କୀର୍ତ୍ତିସ୍ତମ୍ଭ ।

ଭୀମଭୋଇ ଥିଲେ ମହିମାଧର୍ମାବଲମ୍ବୀ । ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ମହିମାଧର୍ମ ଓଡ଼ିଶାରେ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା । ଓଡ଼ିଶାରେ ବହୁ ଭକ୍ତ ଏହାର ପରିପ୍ରସାର ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଏହି ଧର୍ମରେ କୌଣସି ଦେବଦେବୀ କିମ୍ବା ପ୍ରତିମା ପୂଜା କରାଯାଉ ନ ଥିଲା । ଏହି ଧର୍ମର ଆଧାର ଥିଲା ଶୂନ୍ୟବ୍ରହ୍ମ ।

ତାଙ୍କର କୌଣସି ଆକାର ନାହିଁ, ବିକାର ନାହିଁ କିମ୍ବା କୌଣସି ରୂପ ନାହିଁ । ସେ କଳ୍ପନାତୀତ ରୂପାତୀତ ଓ ଅନୁଭବାତୀତ । ସେ ଅଲେଖ, ନିରଞ୍ଜନ ଓ ଠୁଳଶୂନ୍ୟ ।

ପୁନଶ୍ଚ ଏ ସବୁର ଊର୍ଦ୍ଧ୍ୱରେ ତାଙ୍କର ବ୍ୟକ୍ତିତ୍ୱର ମୂଲ୍ୟାୟନ ମଧ୍ୟ ଆବଶ୍ୟକ । କାରଣ ଦୁଃଖ କଷ୍ଟର କଷାଘାତ ମଧ୍ୟରେ ଯେଉଁ ବ୍ୟକ୍ତିଟି ଅନେକ ଘାତ ପ୍ରତିଘାତର ପରିବେଷ୍ଟନୀରେ ଏକ ଘୋର ତମସାଚ୍ଛନ୍ନ ମୂଳକରେ ନିଜେ ଆଲୋକିତ ହୋଇ ଜଗତକୁ ନିଜର ଆଲୋକରେ ଉଦ୍‌ଭାସିତ କରିଛନ୍ତି । ସେ ନିଶ୍ଚୟ ଏକ ପ୍ରାତଃ ସ୍ମରଣୀୟ ପ୍ରତିଭା । ପ୍ରତିଭାର ବିକାଶ ସହିତ ଦାରିଦ୍ର୍ୟ ବା ଆର୍ଥିକ ସ୍ୱଚ୍ଛଳତାର କୌଣସି ସଂପର୍କ ନାହିଁ । କାରଣ ଭାରତୀୟ ସାଂସ୍କୃତିକ ପରମ୍ପରାରେ ମନୁଷ୍ୟମାନଙ୍କର ଜୀବନ ପ୍ରାୟତଃ ଦୁଃଖ, ଦୈନ୍ୟ ଓ ଜଞ୍ଜାଳ ଭିତରେ ଅତିବାହିତ ହୋଇଥିବା ଯଥେଷ୍ଟ ପ୍ରମାଣ ରହିଛି ।

ସନ୍ଥକବି ଭୀମଭୋଇଙ୍କ ଜୀବନ ସଂପର୍କରେ ଅନେକ ତଥ୍ୟ ମିଳିଥାଏ । ଏକାନ୍ତ ସ୍ୱଳ୍ପ ବୟସରେ ଭୀମଭୋଇଙ୍କୁ ଗାଈ ଜଗି ପରିବାରର ଅନ୍ନ ସଂସ୍ଥାନରେ ସାହାଯ୍ୟ କରିବାକୁ ପଡୁଥିଲା ।

ଗାଇ ଜଗିବା ସମୟରେ ମଧ୍ୟ ଭୀମଭୋଇ କେତେକ କବିତା ରଚନା କରିଥିଲେ । ଏଗୁଡ଼ିକ ଥିଲା ସମ୍ବଲପୁର ଅଞ୍ଚଳର ଲୋକଗୀତ, ରସର କେଳି, ହଳିଆଗୀତ, ଡାଲଖାଇ ଓ ବଉଳମାଳା । ମହିମା ସ୍ୱାମୀଙ୍କ ସଂସ୍ପର୍ଶରେ ଆସି ଭୀମଭୋଇଙ୍କ ଜୀବନ ପରିବର୍ତ୍ତିତ ହେଲା । ଭୀମଭୋଇଙ୍କଠାରେ ଥିବା ଦିବ୍ୟ କବିତ୍ୱର ପରିଚୟ ହୁଏତ ମହିମା ଗୋସେଇଁ ପାଇ ପାରିଥିଲେ । ମହିମା ସ୍ୱାମୀଙ୍କ ସହ ତାଙ୍କର ସାନ୍ନିଧ୍ୟକୁ ନେଇ ମଧ୍ୟ ବହୁ କିମ୍ବଦନ୍ତୀ ମହିମାପନ୍ଥୀମାନଙ୍କ ମଧ୍ୟରେ ରହିଛି । ଗୋବିନ୍ଦ ବାବୁଙ୍କୁ ସଙ୍ଗରେ ଧରି ନିଶାର୍ଦ୍ଧରେ ଭୀମଙ୍କୁ ସାକ୍ଷାତ୍ ଦେବା । ଜୀର୍ଣ୍ଣ କୂପ ମଧ୍ୟରୁ ଉଦ୍ଧାର କରି ଦିବ୍ୟ ଦୃଷ୍ଟି ପ୍ରଦାନ କରିବା, ସ୍ୱପ୍ନରେ ଦର୍ଶନ ଦେବା ଆଦି କିମ୍ବଦନ୍ତୀର କଥା । କିନ୍ତୁ ଭୀମଭୋଇ ଅନେକ ଜନ୍ମାନ୍ଧ ବୋଲି ବର୍ଣ୍ଣନା କରିଥିବା ସ୍ଥଳେ କେତେକ ପୁଣି କହନ୍ତି ଯେ, ସେ ଜନ୍ମାନ୍ଧ ନ ଥିଲେ, ବରଂ ପରବର୍ତ୍ତୀ କାଳରେ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଦୃଷ୍ଟିଶକ୍ତି ହରାଇଥିଲେ । "Modern Buddhism and its followers in Odisha" ପୁସ୍ତକରେ ନଗେନ୍ଦ୍ର ନାଥ ବସୁଙ୍କ ବର୍ଣ୍ଣିତ ମତର ଅନୁସରଣରେ ସ୍ୱର୍ଗୀୟ ଡ. ଆର୍ତ୍ତବଲ୍ଲଭ ମହାନ୍ତି ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ 'ସ୍ତୁତି ଚିନ୍ତାମଣି' ଗ୍ରନ୍ଥର ମୁଖବନ୍ଧରେ ଭୀମଭୋଇ ଅନ୍ଧ ଥିଲେ ବୋଲି କହିଛନ୍ତି । ପ୍ରଫେସର ଚିତ୍ତରଞ୍ଜନ ଦାସ ଓ ପ୍ରଫେସର ନବୀନ କୁମାର ସାହୁ ମଧ୍ୟ ଏହି ମତଟିକୁ ଗ୍ରହଣ କରିଛନ୍ତି । କିନ୍ତୁ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ମତକୁ ଖଣ୍ଡନ କରିଛନ୍ତି ।

ମହିମା ଧର୍ମ ଗ୍ରହଣ କରିବା ପରେ ସେ ଦିବ୍ୟଜ୍ଞାନ ଓ ଦିବ୍ୟ କବିତ୍ୱ ଲାଭ କରିଥିଲେ । ଏହି ଧର୍ମ ହିଁ ତାଙ୍କୁ ଅନ୍ଧତ୍ୱରୁ ମୁକ୍ତ କରି ଚକ୍ଷୁଷ୍ମାନ କରିଥିଲା ।

ଗୁରୁଙ୍କ ସାନ୍ନିଧ୍ୟରୁ ଯେଉଁ ଜ୍ଞାନ ଲାଭ ହୁଏ ତାହାକୁ ପ୍ରତ୍ୟକ୍ଷ ଜ୍ଞାନ ବୋଲି କୁହାଯାଏ । ସେ ଯାହା ବି ହେଉ ଭୀମ ଭୋଇ ଥିଲେ ମହିମାଧର୍ମାବଲମ୍ବୀ । ଊନବିଂଶ ଶତାବ୍ଦୀ ଶେଷାର୍ଦ୍ଧରେ ମହିମା ଧର୍ମ ଓଡ଼ିଶାରେ ବେଶ୍ ଲୋକପ୍ରିୟତା ଅର୍ଜନ କରିଥିଲା ।

ଓଡ଼ିଶାର ବହୁ ଭକ୍ତ ଏହି ଧର୍ମରେ ଦୀକ୍ଷିତ ହୋଇଥିଲେ । ଏହାର ପରିପ୍ରସାର ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଏହି ଧର୍ମରେ କୌଣସି ଦେବଦେବୀ କିମ୍ବା ପ୍ରତିମା ପୂଜା କରାଯାଉ ନ ଥିଲା । ଏହି ଧର୍ମର ଆଧାର ଥିଲା ଶୂନ୍ୟବ୍ରହ୍ମ । ତାଙ୍କର କୌଣସି ଆକାର ନାହିଁ । ବିକାର ନାହିଁ କିମ୍ବା କୌଣସି ରୂପ ନାହିଁ । ସେ କଳ୍ପନାତୀତ, ରୂପାତୀତ ଓ ଅନୁଭବାତୀତ । ସେ ଅଲେଖ ନିରଞ୍ଜନ ଓ ଠୁଳଶୂନ୍ୟ । ସମାଜ ଦ୍ୱାରା ସେ ବହୁଳ ଭାବରେ ନିର୍ଯ୍ୟାତିତ ହୋଇଥିଲେ । ଚର୍ମଚକ୍ଷୁ ହରାଇଥିଲେ ମଧ୍ୟ ସେ ମର୍ମଚକ୍ଷୁରେ ଅନୁଭବ କରୁଥିଲେ ବିଶ୍ୱବ୍ରହ୍ମାଣ୍ଡକୁ । ସୂକ୍ଷ୍ମ ଆତ୍ମଚକ୍ଷୁରେ ସେ ଦେଖିପାରୁଥିଲେ ଲୀଳାମୟ ଭଗବାନଙ୍କର ଅବର୍ଣ୍ଣନୀୟ ରୂପ ମାଧୁରୀକୁ । ପ୍ରାଚୀନ ଗ୍ରୀକ୍ କବି ହୋମର୍, ଇଂରେଜ କବି ମିଲ୍‌ଟନ୍, ହିନ୍ଦୀ ସାହିତ୍ୟର କବି ସୁର ଦାସଙ୍କ ପରି ସେ ଅନ୍ଧ ଥିଲେ ମଧ୍ୟ ସଂସାରର ନଶ୍ୱରତା ଜୀବନର ଅସଲ ରହସ୍ୟକୁ ହୃଦୟଙ୍ଗମ କରିପାରିଥିଲେ । ସେ ଜ୍ଞାନୀ କିମ୍ବା ଦାର୍ଶନିକ ଥିଲେ ସତ୍ୟ କିନ୍ତୁ ତାଙ୍କର ଦୃଷ୍ଟିଭଙ୍ଗୀ ଥିଲା ଦାର୍ଶନିକତା ପରି ତୀକ୍ଷ୍ଣ ଓ ଶାଣିତ ।

ଯନ୍ତ୍ରଣା ଜର୍ଜରିତ ଅନୁଭବରୁ କବିଙ୍କ ହୃଦୟରୁ ଝରି ଆସୁଥିଲା ଭକ୍ତି ରସାପ୍ଲୁତ 'ସ୍ତୁତି ଚିନ୍ତାମଣି'ର ଅମୃତ ନିର୍ଝରିଣୀ । ହୃଦୟ ତାଙ୍କର ପୂର୍ଣ୍ଣ ହୋଇଥିଲା ମହିମାମୟ ପ୍ରଭୁ ଅଲେଖଙ୍କ ଦିବ୍ୟ ଚେତନାରେ । ଦାର୍ଶନିକ ପରି ନିଜ ଘଟରେ ବିଶ୍ୱର ସମସ୍ତ ଉପଲବ୍ଧ କରିପାରିଥିଲେ ।

ଶୂନ୍ୟବାଦ ବା ଶୂନ୍ୟବ୍ରହ୍ମର ଉପାସନା ଥିଲା ମହିମା ଧର୍ମର ମୂଳ ଦର୍ଶନ । ଏ ବିଶ୍ୱ ବ୍ରହ୍ମାଣ୍ଡ ସେହି ଶୂନ୍ୟବ୍ରହ୍ମଙ୍କର ଇଙ୍ଗିତରେ ଆତଯାତ ହେଉଛି, ଭାଗବତର ଉଦାର ଭାବ ଓ ଭାବନାରେ କବି ଅନୁପ୍ରାଣିତ ହୋଇଥିଲେ । ତେଣୁ ସେ ସର୍ବଘାଟରେ ଈଶ୍ୱର ବିଦ୍ୟମାନ ବୋଲି ଘୋଷଣା କରୁଥିଲେ । ଜଗତର ସକଳ ଦୁଃଖକୁ ସେ ନୀଳକଣ୍ଠ ପରି ପାନ କରି ଜଗତର ହିତ କାମନା କରୁଥିଲେ । ଜଗତର ସକଳ ପଦାର୍ଥର ସେ ଈଶ୍ୱରଙ୍କ ସତ୍ତାକୁ ଉପଲବ୍ଧ କରୁଥିଲେ । ଗଛ-ଲତା, କୀଟ-ପତଙ୍ଗ, ମେରୁ-ମେଦିନୀ,

କାଷ୍ଠ-ପାଷାଣ, ଦୁଷ୍ଟ-ସନ୍ଥ ଓ ସେବକ-ସାମନ୍ତ ସବୁରି ଭିତରେ ଲୀଳାମୟ ଈଶ୍ୱରଙ୍କର ଦିବ୍ୟ ଅଧିଷ୍ଠାନ । ସଜୀବ-ନିର୍ଜୀବ ସବୁଥିରେ ଈଶ୍ୱର ଆତ୍ମା ରୂପରେ ଅବସ୍ଥାନ କରିଥାନ୍ତି । ଜଳକୁ ଧାରଣ କରିବା ପାଇଁ ଯେପରି ପାତ୍ର ଦରକାର, ସେହିପରି ଆତ୍ମାକୁ ଧାରଣ କରିବା ପାଇଁ ଆଧାର ପାତ୍ର ରୂପୀ ଶରୀର ଦରକାର । ସ୍ୱଚ୍ଛ ସୁଢ଼ଳ ଧାତୁ ପାତ୍ର ପରି ଶରୀର ସେଥିରେ ଆତ୍ମା ଜୀବଧର୍ମ ରୂପେ ବିଦ୍ୟମାନ । ଆତ୍ମା ନ ଥିଲେ ଶବପିଣ୍ଡ ମୃତ । ତେଣୁ ପ୍ରାଣୀଙ୍କ ଅଙ୍ଗରେ ଆତ୍ମା ଏକୀଭୂତ ହେଲେ ମଧ ତାହା ସ୍ୱଚ୍ଛ ଭାବେ ଫୁଟି ଦିଶୁଥାଏ । କବିଙ୍କର ଏହି ଦାର୍ଶନିକ ଅନୁଚିନ୍ତାଟି ହେଲା –

''କାଠର ଭିତରେ ସୁଢ଼ଳ ଧାତୁରେ
ଜଳ ପୂରିଥାଏ ଯେତେ
ପ୍ରାଣୀଙ୍କ ଅଙ୍ଗରେ ଜୀବଧର୍ମ ରୂପ
ଫୁଟି ଦିଶୁଥାଏ ସତେ ।''

ମହିମା ଧର୍ମରେ ସକଳ ବସ୍ତୁର ଊର୍ଦ୍ଧ୍ୱରେ ଠୁଳଶୂନ୍ୟ ଅବସ୍ଥିତ । ଠୁଳଶୂନ୍ୟ ଊର୍ଦ୍ଧ୍ୱରେ ମହିମା ଅଲେଖଙ୍କ ଅବସ୍ଥାନ । ବିଶ୍ୱର ଦୃଶ୍ୟମାନ ଜଗତ ତଥା ବିଶ୍ୱବ୍ରହ୍ମାଣ୍ଡର ଠୁଳଶୂନ୍ୟ ପର୍ଯ୍ୟନ୍ତ ଯାହାସବୁ ପରିବ୍ୟାପ୍ତ ତା'ର ଦେବତା ହେଉଛନ୍ତି ମହିମା ଅଲେଖ । ଗ୍ରହ, ଉପଗ୍ରହ, ନକ୍ଷତ୍ର ଇତ୍ୟାଦି ଧ୍ରୁବଲୋକ ପର୍ଯ୍ୟନ୍ତ ସମସ୍ତେ ଅବିକାର ବ୍ରହ୍ମଙ୍କର ଆଶ୍ରିତ । ଅସୀମ ସିନ୍ଧୁପରି ସେ ସର୍ବତ୍ର ବ୍ୟାପୀ ରହିଛନ୍ତି ।

ମାନବର ଚିନ୍ତା, ଦୃଷ୍ଟି, ପରିକଳ୍ପନାଠାରୁ ଊର୍ଦ୍ଧ୍ୱରେ ସେ ଅଦୃଶ୍ୟ ଭାବରେ ବିରାଜମାନ କରିଛନ୍ତି । କବିଙ୍କର ଦାର୍ଶନିକ ଦୃଷ୍ଟିକୋଣ ଏହାକୁ ସୁନ୍ଦର ଭାବରେ ବ୍ୟକ୍ତ କରିଛି ।

'ଠୁଳ ଶୂନ୍ୟଠାରୁ ତହିଁ ଉପରକୁ ଦେଖିଲଇଁ କିଛି
ଅବିକାର ବ୍ରହ୍ମ ଅନାମ-ଅରୂପ ସିନ୍ଧୁ
ପ୍ରାୟେ ପୂରି ଅଛି ।'

ଜୀବନ ସଂପର୍କରେ ସନ୍ଥକବି ଭୀମଭୋଇଙ୍କର ଥିଲା ଗଭୀର ଜିଜ୍ଞାସାବୋଧ । ତାଙ୍କ ମତରେ ମାନବର ଶରୀର ପଞ୍ଚମହାଭୂତରେ ଗଠିତ । କ୍ଷିତି, ଅପ୍, ତେଜ, ମରୁତ ଓ ବ୍ୟୋମ ଏହି ପଞ୍ଚଭୂତ ହିଁ ଶରୀର ମଧ୍ୟରେ ଅବସ୍ଥାନ କରନ୍ତି । ଏମାନଙ୍କର ଅନୁପସ୍ଥିତିରେ ଶରୀର ମୃତ ଜଡ଼ପିଣ୍ଡ । ମାନବ ଶରୀର ରୂପକ ତାରଣ ଭାଣ୍ଡରେ ଆତ୍ମା ରୂପୀ ପଞ୍ଚଭୂତମାନେ ଲୀଳାଖେଳା କରୁଥାନ୍ତି । ଆତ୍ମା ଯୋଗୁଁ ହିଁ ଶରୀର ପବିତ୍ର ରହେ । ତେଣୁ ପରମାତ୍ମା ପରମପୁରୁଷଙ୍କ ଯୋଗୁଁ ହିଁ ଶରୀର ମୋକ୍ଷ ବା ମୁକ୍ତିଲାଭ କରିଥାଏ । ଏହି ତତ୍ତ୍ୱ ଅତ୍ୟନ୍ତ ସରଳ ଓ ସାବଲୀଳ ଛନ୍ଦରେ କବି ବ୍ୟକ୍ତ କରିଛନ୍ତି । ''ଅଗ୍ନିଚୁଲା ପରେ ତାରଣ ଭାଣ୍ଡରେ ଯେସନେ ଫୁଟଇ ଅନ୍ନ, ତେସନ ପରାଏ ହୃଦେ ଡେଉଁଥାଇ ପଞ୍ଚଭୂତ ଆଜ୍ଞାମାନ'' । ଏହିପରି ସନ୍ଥକବି ଭୀମଭୋଇ ନିଜର ମାନବବାଦୀ ଦୃଷ୍ଟିଭଙ୍ଗୀକୁ ପ୍ରକଟ କରିବାକୁ ଯାଇ ପ୍ରକାଶ କରିଛନ୍ତି ।

ସଂସାର ଓ ସନ୍ନ୍ୟାସ ଉଭୟର ସମାହାର ଘଟିଥିଲା ତାଙ୍କ ଜୀବନରେ । ଯେହେତୁ ସେ ଜୀବନକୁ ତୀବ୍ର ଭାବରେ ଭଲ ପାଉଥିଲେ । ଏହାର କାରଣ ହେଉଛି ତାଙ୍କ ଲାଞ୍ଛିତ ବାଲ୍ୟବସ୍ଥାର ତିକ୍ତ ଅନୁଭୂତି ଏବଂ ସଦ୍‌ଗୁରୁଙ୍କର ସାନ୍ନିଧିଲାଭ । ଲାଞ୍ଛିତ ଜୀବନର ଯନ୍ତ୍ରଣାକୁ ଅଙ୍ଗେ ନିଭେଇ ମଧ ସେ ଅଭୀପ୍ସା କରି ନାହାନ୍ତି ବୌଦ୍ଧ ଧର୍ମର ନିର୍ବାଣ ବା ମୋକ୍ଷ । ତେଣୁ 'କାମନାର ବିନାଶରେ ଦୁଃଖର ବିନାଶ' ତାଙ୍କୁ ଯେତିକି ପ୍ରଭାବିତ କରି ନାହିଁ, ସେତିକି ଉଦ୍‌ବୁଦ୍ଧ କରିଛି । ବେଦାନ୍ତ ଦର୍ଶନର ସାର୍ବଜନୀନତା ବା ଶ୍ରୀମଦ୍ ଭଗବଦ୍ ଗୀତାର 'ସର୍ବଭୂତହିତେରତ' ।

ଭୀମଭୋଇ ସାଧାରଣ ମନୁଷ୍ୟର କ୍ରୋଧ, ଅହଙ୍କାରର ବଶବର୍ତ୍ତୀ ହୋଇ ମଧ ସଂସାରରେ ଜୀବନ ଯାପନ କରୁଥିବା ସାଧାରଣ ମାନବମାନଙ୍କ ପାଇଁ ସମ୍ବେଦନଶୀଳ ହୋଇ ଉଠିଛନ୍ତି । ଏହି ଜୀବନବାଦିତା ତଥା ମାନବଦରଦୀ ଗୁଣର ଅଧିକାରୀ ହୋଇ ସେ

ଆଧ୍ୟାତ୍ମ ସିଦ୍ଧିଲାଭ କରିଛନ୍ତି । ଯାହାକି ହୁଏତ ଅନେକ ସଂସାର ତ୍ୟାଗୀ ବୈରାଗୀଙ୍କ ପକ୍ଷେ ସମ୍ଭବ ହୋଇ ନ ଥିବ । ଭୀମଭୋଇଙ୍କ ଚରିତ୍ରର ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ତାଙ୍କର ଉଦାର ଚେତନା । ମହିମା ଧର୍ମର ଶ୍ରେଷ୍ଠ ପୁରୋଧା ହୋଇ ମଧ୍ୟ ହିନ୍ଦୁଧର୍ମ ଓ ସଂସ୍କୃତି ପ୍ରତି, ବିଶେଷ କରି ଏଇ ସଂସ୍କୃତିର ମଉଡ଼ମଣି ଶ୍ରୀଜଗନ୍ନାଥଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନ ଓ ଭକ୍ତି ଥିଲା ।

'ସ୍ତୁତି ଚିନ୍ତାମଣି' ଗ୍ରନ୍ଥଟିକୁ ଅଧ୍ୟୟନ କଲେ ସେ ବାସ୍ତବରେ ହିନ୍ଦୁ ଦେବଦେବୀ – ବିଶେଷ କରି ଶ୍ରୀଜଗନ୍ନାଥଙ୍କ ପ୍ରତି କେତେ ପରିମାଣ ଆସକ୍ତ ଥିଲେ ତାହା ସ୍ପଷ୍ଟ ଜଣାପଡ଼େ । କବି ନିଜର ଆକୁତି ବାଢ଼ି କହିଛନ୍ତି –

'ବେଦ ବଖାଣିଛି ଶାସ୍ତ୍ରରେ ରହିଛ
ନିୟତେ ପ୍ରମାଣ ସତ
ନୀଳାଚଳେ ପ୍ରଭୁ ବିରାଜ କରନ୍ତି
ନୀଳଗିରି ଜଗନ୍ନାଥ ।
ଅନୁସରି ବ୍ରହ୍ମହୁରୁ ଆଶା କର
ହୃଦୟ ପଦ୍ମରେ ଚିନ୍ତି
ମଉନରେ ବସି ନାମ ବୋଲାଇଲ
ଦାରୁ ମହିମା ମୂରତି ।'

କେବଳ ଶ୍ରୀଜଗନ୍ନାଥଙ୍କ ପ୍ରତି ଯେ କବିଙ୍କର ଆକର୍ଷଣ ପ୍ରବଳ ଥିଲା ତା'ନୁହେଁ ହିନ୍ଦୁମାନଙ୍କର ଆରାଧ୍ୟ ଅନ୍ୟାନ୍ୟ ଦେବଦେବୀ ଯଥା ଶ୍ରୀରାମ, ଶ୍ରୀହରି ଇତ୍ୟାଦିଙ୍କ ପ୍ରତି ଥିଲା ତାଙ୍କର ସମ୍ମାନ ଓ ଭକ୍ତି । ମହିମାମୟ ବ୍ୟକ୍ତିତ୍ୱର ବାସ୍ତବ ପରିଚୟ ହେଉଛି ବ୍ୟକ୍ତି ପ୍ରତି ସମ୍ବେଦନଶୀଳତା ତଥା ବୌଦ୍ଧିକ ଏବଂ ଭାବଗତ ଉଦାରତା ଓ ସାମାଜିକ କ୍ଷେତ୍ରରେ ସମ୍ବେଦନଶୀଳତା ତଥା ଜୀବନ ପ୍ରାଣତା ବ୍ୟକ୍ତିର ବ୍ୟକ୍ତିତ୍ୱକୁ ଉର୍ଦ୍ଧ୍ୱସ୍ତରରେ ଟେକି ରଖେ ।

ଏହି ଦୃଷ୍ଟିରୁ ବିଚାର କଲେ ସମସ୍ତ ଧର୍ମ, ଦର୍ଶନ ମଧ୍ୟରେ ଭୀମଭୋଇ ଥିଲେ ଜଣେ ଉର୍ଦ୍ଧ୍ୱଚେତା ବ୍ୟକ୍ତି । ଭୀମଭୋଇଙ୍କ କାବ୍ୟ, କବିତା ଓ ସୃଷ୍ଟି ମଧ୍ୟରେ ତତ୍ତ୍ୱାନୁଚିନ୍ତନ ସଂପର୍କରେ ସମୀକ୍ଷା କରିବାକୁ ଗଲାବେଳେ ମହିମାଧର୍ମ ଓ ଦର୍ଶନର ସ୍ୱରୂପ ସଂପର୍କରେ ସାମାନ୍ୟ ଦୃକ୍‌ପାତ ଅପରିହାର୍ଯ୍ୟ । ତାଙ୍କର କବିତାଗୁଡ଼ିକ ଅତ୍ୟନ୍ତ ମାର୍ମିକ, କୋମଳ ଓ ସ୍ନିଗ୍ଧ ହୋଇଥିଲେ ମଧ୍ୟ ସେଗୁଡ଼ିକ ମୁଖ୍ୟତଃ ମହିମାତତ୍ତ୍ୱର ପ୍ରଚାର ପାଇଁ ଉଦ୍ଦିଷ୍ଟ । ମହିମା ଧର୍ମର ଉତ୍ପତ୍ତି ହୁଏ ଏକ ବେଦନାସିକ୍ତ ଆର୍ତ୍ତରୁ । ଧର୍ମର ଏହି ସାର୍ବଜନୀନତାକୁ ପ୍ରତିପାଦନ କରିବା ହେଲା ମହିମା ଧର୍ମର ଆଭିମୁଖ୍ୟ ଏବଂ ପ୍ରସ୍ଥାନତ୍ରୟୀ ଉପରେ ଆଧାରିତ ଅଦ୍ୱୈତ ବେଦାନ୍ତ ।

ଦର୍ଶନରେ 'ସର୍ବଖଲ୍ୱିଦଂ ବ୍ରହ୍ମ' ହିଁ ହେଉଛି ଏକ ଏହି ସାର୍ବଜନୀନତାର ଚୂଡ଼ାନ୍ତ ନିଷ୍ପତ୍ତି । ଠିକ୍ ଏହି ଦୃଷ୍ଟିରୁ ଅବଧୂତ ବିଶ୍ୱନାଥ ବାବା ମହିମା ଧର୍ମକୁ ବିଶୁଦ୍ଧା ଦ୍ୱୈତ ଦର୍ଶନ ବୋଲି ଅଭିହିତ କରିଅଛନ୍ତି । ତାଙ୍କ ମତରେ 'ଏହି ଦୃଶ୍ୟାଦୃଶ୍ୟ ଅନନ୍ତ କୋଟି ଜୀବଜଗତ ଯେଉଁ ଏକ ଅଦ୍ୱିତୀୟ ପ୍ରଭୁ ପରମବ୍ରହ୍ମଙ୍କ ଅଦ୍ଭୁତ ମହିମାରୁ ସମ୍ଭୂତ ହୋଇଅଛି ସେହି ଏକ ପ୍ରଭୁ ପରଂବ୍ରହ୍ମ କେବଳ ଏକ ବିଶୁଦ୍ଧ, ଅଦ୍ୱିତୀୟ ପରମ ଅବ୍ୟକ୍ତ ସଚ୍ଚିଦାନନ୍ଦ ସ୍ୱରୂପ ସେହି ସ୍ୱମହିମାରେ ବିରାଜିତ ରହିଅଛନ୍ତି' ।

ମହିମା ଧର୍ମର ପରମ ସତ୍ତା ହେଉଛି ସର୍ବଗରିମାମୟ । ସଚରାଚର ଜଗତର ଉତ୍ସ ମହିମା, ଯାହାକୁ ଶ୍ରୀମଦ୍ ଭାଗବତ୍‌ରେ 'ଜନ୍ମାଦସ୍ୟ ଯତଃ' ଏବଂ ଶ୍ରୀ ଶ୍ରୀ ଚଣ୍ଡିରେ ଆଧାର ରୂପ ଜଗତସ୍ତ୍ୱମେକା ବୋଲି କୁହାଯାଇଛି । ଠିକ୍ ସେହିଭଳି ଭୀମଭୋଇ ଏହି ପରମ ସତ୍ତାକୁ ଶୂନ୍ୟ, ନିରାକାର, ନିର୍ବେଦ ବା ନିର୍ଗୁଣ, ଅନାମ, ଅଲେଖ ଓ ଅଜପା ଇତ୍ୟାଦି ଅଭିହିତ କରିଛନ୍ତି ।

ଏଥିରୁ ସ୍ପଷ୍ଟ ହେଉଅଛି ଯେ, ଅଦ୍ୱୈତ ବେଦାନ୍ତର ନିରାକାର ନିର୍ଗୁଣ ବ୍ରହ୍ମପରି ଅଲେଖ ପରଂବ୍ରହ୍ମ ମଧ୍ୟ ନିର୍ଗୁଣ ଶୂନ୍ୟ ଓ ନିରାକାର । ପୁଣି ଅନେକ କ୍ଷେତ୍ରରେ ସେ ମହିମାମୟ 'ଆପଣେ ମହାନିଷ୍କାମ ଆପଣେ ସକାମ' ବ୍ରହ୍ମର ଶରୀର ତୁଳାପ୍ରାୟ ଚିକ୍କଣ ।

ଅଲେଖ ପୁରୁଷ ରୂପବନ୍ତ ହୋଇଲେ ବ୍ରହ୍ମାଣ୍ଡକୁ ଅଇଲେ । ଏକ ପକ୍ଷରେ ବ୍ରହ୍ମକୁ ଜୀବ ପରମ ଏକାକାର ସ୍ୱରୂପ ବୋଲି ଯେପରି କୁହାଯାଇଛି, ଜୀବର ଉଦ୍ଧାର ପାଇଁ ପରଂବ୍ରହ୍ମ ସନାତନଙ୍କର ଆବିର୍ଭାବ ବୋଲି ମଧ୍ୟ କୁହାଯାଇଛି । ଭାରତୀୟ ପରମ୍ପରାରେ କେବଳ ଶୁଷ୍କ ତତ୍ତ୍ୱଜ୍ଞାନ ଜୀବନର ଶେଷ କଥା ନୁହେଁ । ତତ୍ତ୍ୱଟିକୁ ନିଜର ଅତି ଆପଣାର କରି ସେଥିରେ ବଞ୍ଚିବା ଓ ଗଢ଼ିବା ହେଉଛି ମାନବର ପରମ ପୁରୁଷାର୍ଥ । ଏଇଠି ସୂତ୍ରପାତ ହୁଏ ତତ୍ତ୍ୱଜିଜ୍ଞାସା ଓ ଧର୍ମଜିଜ୍ଞାସାର ଏକ ମିଥୁନ ଲଗ୍ନ । ତତ୍ତ୍ୱଟି କ୍ରମେ ଜୀବନଧାରାରେ ସାମିଲ ହୁଏ । ଠିକ୍ ତାହା ହିଁ ଘଟିଛି ଭୀମଭୋଇଙ୍କର ସାରସ୍ୱତ ପ୍ରତିଭାର ଛତ୍ରେ ଛତ୍ରେ ।

ଏହି ବିଚାରରୁ ସ୍ପଷ୍ଟ ହୋଇ ଉଠିବ ଯେ, ତତ୍ତ୍ୱବୟାନର ଗୁରୁତ୍ୱ ଦୃଷ୍ଟିରୁ ବ୍ରହ୍ମକୁ ଅଣାକାର, ଅଲେଖ, ଶୂନ୍ୟ, ନିର୍ବେଦ ଇତ୍ୟାଦି କହିଥିବା ସ୍ଥଳେ ସର୍ବଜନ କଲ୍ୟାଣକାମୀ ଧର୍ମର ଉପାସ୍ୟ ବ୍ରହ୍ମକୁ ସର୍ବ ଦୁଃଖହାରୀ ସକଳ ବେଦନା ଓ ଆର୍ତ୍ତର ଶାନ୍ତସ୍ନିଗ୍ଧ ପ୍ରଲେପ । ଦୟାମୟ ମଣିମା ଦୀନଜନ ଶରଣ, ରକ୍ଷଣ ମହାବାହୁ ଇତ୍ୟାଦି ବର୍ଣ୍ଣନା ଓ ଲକ୍ଷଣ ମାଧ୍ୟମରେ ଭୀମଭୋଇ ବର୍ଣ୍ଣନା କରିଅଛନ୍ତି ।

ସବୁ ମତାମତର ପରେ ମଧ୍ୟ ଧାର୍ମିକ ମାନଚିତ୍ରରେ ମହିମା ଧର୍ମର ଏକ ସ୍ୱତନ୍ତ୍ର ସ୍ଥାନ ନିରୂପଣ କରିଅଛନ୍ତି । ଏହି ସ୍ୱତନ୍ତ୍ର ସ୍ଥାନଟି କ'ଣ? ଅନୁଧ୍ୟାନରୁ ଜଣାଯାଏ ଯେ, ମହିମା ଧର୍ମର ଶ୍ରେଷ୍ଠ ପ୍ରବକ୍ତା ଭୀମଭୋଇ ଶୂନ୍ୟ ବ୍ରହ୍ମର ଉପାସକ ।

ଏହି 'ଶୂନ୍ୟ' ପ୍ରତ୍ୟୟଟି ସଂପର୍କରେ ସ୍ମରଣ ରଖିବାକୁ ହେବ ଯେ ଜାଗତିକ ସ୍ଥିତିର 'ଅଭାବକୁ' ଭୀମଭୋଇ ଶୂନ୍ୟ ଭାବେ ଗ୍ରହଣ କରି ନାହାନ୍ତି । ତାଙ୍କ ଦୃଷ୍ଟିରେ 'ଶୂନ୍ୟ' ହିଁ ସକଳ ଭାବ ସ୍ଥିତିର ଆଧାର । ସକଳ ସାର ଅସାର, ସତ୍ୟ-ମିଥ୍ୟା, ସଗୁଣ ଓ ନିର୍ଗୁଣ ଏହି ଶୂନ୍ୟରେ ହିଁ ଅବଧାରିତ । ଏହି ଦୃଷ୍ଟିରୁ ବିଚାର କଲେ ଅନୁମିତ ହୁଏ ଯେ, ମହିମା ଧର୍ମ ତଥା ଭୀମଭୋଇଙ୍କ ଉଲ୍ଲିଖିତ 'ଶୂନ୍ୟ' ଏକ ସ୍ୱତନ୍ତ୍ର ବିଚାର ଦାବି କରେ । ଅନ୍ୟ ପକ୍ଷରେ ବ୍ରହ୍ମ ଅନ୍ତଃସାର ଶୂନ୍ୟ ନୁହେଁ – ଏହା ପୂର୍ଣ୍ଣଗର୍ଭା ଶୂନ୍ୟ, ଯାହା ପୂର୍ଣ୍ଣ ହିଁ ତାହା ।

ସେହି ପୂର୍ଣ୍ଣଗର୍ଭା ଅକ୍ଷର ପୁରୁଷ ଶୂନ୍ୟ ହିଁ ସକଳ ଜଗତର ତ୍ରାଣକର୍ତ୍ତା । ଶୂନ୍ୟ ଭିତରେ ହଜିଯାଏ ସକଳ ବିଦ୍ୱେଷ, ସକଳ ଦ୍ୱନ୍ଦ୍ୱ । ତତ୍ତ୍ୱ ଦୃଷ୍ଟିରୁ ହୁଏତ ସେ ଅବର୍ଣ୍ଣନୀୟ କିନ୍ତୁ ସେ ହେଉଛନ୍ତି ସମସ୍ତ ଆଶା ଓ ଆକାଂକ୍ଷାର ପ୍ରତୀକ ଗତି – ଭର୍ତ୍ତା ଶରଣ ସୁହୃଦ ଓ ପ୍ରଭୁ । ତେଣୁ ଭୀମଭୋଇଙ୍କ ପ୍ରାର୍ଥନା ହେଲା –

ପ୍ରଭୁଙ୍କୁ ନ କହି କାହାକୁ କହିବି
କେ ବୁଝିବ ମୋର ଦୁଃଖ
ଦୁଃଖୀଜନ ବନ୍ଧୁ ଅଟ ପରା ତୁମ୍ଭେ
କୃପା କରି ମୋତେ ରଖ ।

ସକଳ ଜଗତର ଆରାଧ୍ୟ ଅନ୍ତର୍ଯ୍ୟାମୀ ଅଲେଖ । ଅନାମ ପୁରୁଷ ହେଉଛନ୍ତି ଗୁରୁ ଭୀମଭୋଇଙ୍କ ଭାଷାରେ–

'ଗୁରୁତ ସକଳ ଅନ୍ତରଯାମିଟି
ଆତଙ୍କ ଫେଡ଼ନ ବାନା
ଆରତ ତାରଣ ନାଥ ବୋଲି କହି
ହୃଦେ କରୁଛ ଭାବନା
ଦୁଃଖୀଜନ ବନ୍ଧୁ ଦୁଃଖୀର ଶଙ୍ଖାଳି
ଅରକ୍ଷଙ୍କ ଗଣ୍ଠିଧନ
ଗାଇଲେ କହିଲେ ନ ସରଇ ପରା
ଦରିଦ୍ର – ଜୀବ – ଜୀବନ
ତୁମ୍ଭ ନାମ ପରା ଅଲେଖ ମହିମା
ଭବେ ପରା ଯୁଗ ଶେଷେ
ଅକାଳ ମରଣ ଅଦ୍ଭୁତ ବିପତ୍ତି
ଆସି ରହିଲାଣି ପାଶେ ।'

ଭୀମଭୋଇଙ୍କ ଦୃଷ୍ଟିରେ ଯିଏ ବ୍ରହ୍ମ ସିଏ ଶୂନ୍ୟ । ସିଏ ଜଗତ ଏବଂ ସେ ଜଗତର ସଦ୍‌ଗୁରୁ । ଯିଏ ପୂର୍ଣ୍ଣ

ସିଏ ଶୂନ୍ୟ । ଯିଏ ଅଲେଖ ସିଏ ମହିମା, ଯିଏ ସର୍ବାର୍ଯ୍ୟାମୀ, ସିଏ ପୁଣି ଚିନ୍ତା ଓ ଚେତନାର ଅତୀତ, ଅଣାକାର । ଯିଏ ଗୁରୁ, ସିଏ ଶିଷ୍ୟ । ତାତ୍ତ୍ୱିକ ଦୃଷ୍ଟିରୁ ସେଠି ଗୁରୁ ଓ ଶିଷ୍ୟର ଭେଦଭାବ ନାହିଁ ।

ମାନବ ତା'ର କର୍ମଫଳ ହିଁ ଭୋଗ କରେ । ସୁଖ ଦୁଃଖ, କପଟତା, ନିଷ୍କପଟତା, ନିର୍ଦ୍ଧନତା, ତଥା ପ୍ରାଚୁର୍ଯ୍ୟ ସବୁକିଛି ନିଜର ପୂର୍ବାର୍ଜିତ କର୍ମଯୋଗୁଁ ହିଁ ସମ୍ଭବ ହୋଇଥାଏ । ସବୁକିଛି ପାଇଁ ଈଶ୍ୱରଙ୍କୁ ଦୋଷ ଦେବା ଅର୍ଥ ନିଜର କୃତିତ୍ୱ ନିଜ ଭୂମିକାକୁ ଅସ୍ୱୀକାର କରି ପଳାୟନପନ୍ଥୀ ମନୋଭାବକୁ ଗ୍ରହଣ କରିନେବା ।

କର୍ମଫଳଜନିତ ବ୍ୟକ୍ତି ଦୁଃସ୍ଥିତିକୁ ଗୋପନ ନ ରଖି ସେ ସ୍ୱୟଂ ସତ୍ୟକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ କର୍ମବାଦକୁ ସ୍ୱୀକାର କରି ନେଇଛନ୍ତି । ତାଙ୍କ ଭାଷାରେ –

'କ୍ଷୁଧା ତୃଷା ମାରି ଆଧାର ନ କରି
ରହିଅଛି ନିରିଜଳେ

ଟଳଟଳ ଆତ୍ମା ଟଳି ନ ପଡୁଛି
ଏକା ପରଂବ୍ରହ୍ମ ବଳେ

ଜନ୍ମରେ ମୁଁ ଏକା କର୍ମରେ ନିଶାଖା
ଅଟଇ ଯେ ନିରିମାଖୀ

ଅଦୋଷରେ ମୋତେ ବିଅର୍ଥେ ଦଣ୍ଡୁଛ
ଚନ୍ଦ୍ର ସୂର୍ଯ୍ୟଛନ୍ତି ସାକ୍ଷୀ

ନାହିଁ ବାଡ଼ି ବୃତ୍ତି ବିଶ୍ରାମରେ ସ୍ଥିତି
ଜନ୍ମ ଜନ୍ମାନ୍ତରେ ଦୁଃଖୀ

ବିବେକ ନ କରି ମାରୁଅଛ ଧରି
କି କି ଅପରାଧ ଦେଖି ।'

ଏହି ଅକିଞ୍ଚନବୋଧ କେବଳ କବିଙ୍କର ସାଂସାରିକ ଦୁସ୍ଥିତିରୁ ଜନ୍ମ ନୁହେଁ । ଏହା ତାଙ୍କର ଅପାର୍ଥିବ ଉପଲବ୍ଧ । ମହାନ୍ ଗୁଣର ଅଧିକାରୀ ହେଲେ ମଧ ସେ ଭଗବଦ୍ କରୁଣାର ସହସ୍ରଧାରାକୁ ମର୍ମେ ମର୍ମେ ଉପଲବ୍ଧ କରିଛନ୍ତି ।

ଏକ ପକ୍ଷରେ ନିଜର ଅକିଞ୍ଚନବୋଧ, ଅନ୍ୟ ପକ୍ଷରେ ବିଶ୍ୱର ବିଶାଳତା ତଥା ମହିମା ଗୋସେଇଁଙ୍କର ମହାନତାର ସ୍ପର୍ଶ ତାଙ୍କ ହୃଦୟରୁ ଝରି ପଡ଼ିଛି । 'ସ୍ତୁତି ଚିନ୍ତାମଣି' ପରି ଅନେକ କାବ୍ୟକୃତି ଯଥା– 'ନିର୍ବେଦ ସାଧନା', 'କଳି ଭାଗବତ', 'ବ୍ରହ୍ମ ନିରୂପଣ ଗୀତା', 'ପ୍ରତି ନିଷେଧ ଗୀତା' । ଫଳତଃ କବି ଜଗତକୁ ଏକାନ୍ତ ନିଜର କରି ନେଇଛନ୍ତି । କାବ୍ୟିକ ଉଦାରତା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ସମ୍ବେଦନଶୀଳତାର ମିଳନ ସଂଘଟିତ ହେବା ଫଳରେ କବି ଭୀମଭୋଇ, ସନ୍ଥ କବି ଭୀମଭୋଇରେ ପରିଣତ ହୋଇଯାଇଅଛନ୍ତି ।

ତାତ୍ତ୍ୱିକ ମୀମାଂସା ଦୃଷ୍ଟିରୁ ଆଲୋଚନା କଲେ ସେ ଜଣେ ବିଶିଷ୍ଟ ଦାର୍ଶନିକର ଆସନରେ ଅଧିଷ୍ଠିତ । ଭାରତୀୟ ସନ୍ଥ ପରମ୍ପରାର ଏକ ନୂତନ ଦିଗ ଉନ୍ମୋଚନ କରିବାରେ ତାଙ୍କର ଭୂମିକା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ।

ବିଶେଷତଃ ସେ ନିଜେ ମହାନଚେତା ସନ୍ଥ । ନିଜର କଷଣ ମାଧ୍ୟମରେ ପ୍ରାଣୀଙ୍କ କଷଣ ଏବଂ ପ୍ରାଣୀଙ୍କ କଷଣ ମାଧ୍ୟମରେ ଜଗତର କଷଣକୁ ଉପଲବ୍ଧ କରି ତଥା ନିଜର ସଦାଚାର ମାଧ୍ୟମରେ ଏହି ସମ୍ବେଦନଶୀଳତାର ପରିଚୟ ଦେଇ ସେ ବୈଦାନ୍ତିକ 'ଆତ୍ମବତ୍ ମନ୍ୟତେ ଜଗତ୍'ର ସଫଳ ରୂପାୟନ କରିପାରିଛନ୍ତି । ଯଥାର୍ଥରେ ଭାରତୀୟ ସଂସ୍କୃତି ଭୂମିରେ ସେ ଏକ ମହାନ୍ କୀର୍ତ୍ତିସ୍ତମ୍ଭ ।

ପ୍ରାଧ୍ୟାପିକା ଓ ବିଭାଗ ମୁଖ୍ୟ
ଓଡ଼ିଆ ଭାଷା ସାହିତ୍ୟ, କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ଶିଶୁ ପାଠ୍ୟପୁସ୍ତକର ଜନପ୍ରିୟ ଲେଖକ : ଶ୍ରୀଧର ଦାସ

**ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ**

ଭକ୍ତକବି ମଧୁସୂଦନ ରାଓ ସର୍ବାଧିକ ପରିମାଣର ଆଧୁନିକ ଶିଶୁ ପାଠ୍ୟପୁସ୍ତକ ଓ ଶିଶୁ ସାହିତ୍ୟ ପୁସ୍ତକ ରଚନା କରି ଯଥାର୍ଥରେ ଆଧୁନିକ ଓଡ଼ିଆ ଶିଶୁ ପାଠ୍ୟପୁସ୍ତକର ଜନକ ଭାବରେ ବିବେଚିତ ହୁଅନ୍ତି । ଓଡ଼ିଆ ଭାଷାରେ ଆଧୁନିକ ପାଠ୍ୟପୁସ୍ତକ ରଚନା କ୍ଷେତ୍ରରେ ଯେଉଁ ଲେଖକମାନଙ୍କ ନାମ ଉଲ୍ଲେଖଯୋଗ୍ୟ, ସେମାନଙ୍କ ମଧ୍ୟରେ ବିଶେଷ ଖ୍ୟାତି ଅର୍ଜନ କରିଥିବା ଆଉ ଜଣେ ସୁନାମଧନ୍ୟ ଲେଖକ ହେଲେ ଅଧ୍ୟାପକ ଶ୍ରୀଧର ଦାସ । ସେ ଥିଲେ ଜଣେ ଜ୍ଞାନୀ ଗୁଣୀ ଆଦର୍ଶ ଶିକ୍ଷକ ଓ ଅଧ୍ୟାପକ । ସେ ବିଭିନ୍ନ ଶ୍ରେଣୀର ପାଠ୍ୟପୁସ୍ତକ ରୂପେ ପିଲାଙ୍କ ପଢ଼ିବା ପାଇଁ ବହୁ ସଂଖ୍ୟାରେ ସରକାରୀ ସିଲାବସ୍ ଅନୁସାରେ ପାଠ୍ୟପୁସ୍ତକ ରଚନା କରି ସ୍ମରଣୀୟ ହୋଇ ରହିଅଛନ୍ତି ।

ସେ କେବଳ ମୌଳିକ ପାଠ୍ୟପୁସ୍ତକର ଲେଖକ ନ ଥିଲେ, ଜଣେ ଦକ୍ଷ ଅନୁବାଦକ ମଧ୍ୟ । ଅଭିଧାନ ବା ଶବ୍ଦକୋଷର ସଂକଳକ । ଶିଶୁ କିଶୋରଙ୍କ ଭାଷାରେ ଶୁଦ୍ଧ ଉଚ୍ଚାରଣ ପ୍ରୟୋଗ ପାଇଁ କେତେଗୋଟି ଉପାଦେୟ ବ୍ୟାକରଣ ପୁସ୍ତକ ମଧ୍ୟ ପ୍ରକାଶ କରିଅଛନ୍ତି ।

ପଣ୍ଡିତ ଶ୍ରୀଧର ଦାସଙ୍କର ଓଡ଼ିଆ ବ୍ୟତୀତ ବଙ୍ଗଳା, ସଂସ୍କୃତ, ଇଂରାଜୀ ଭାଷାରେ ମଧ୍ୟ ଯଥେଷ୍ଟ ଦଖଲ ଥିଲା । ବିଶେଷ କରି ବିଶ୍ୱ ସାହିତ୍ୟର ପୁରସ୍କାର ପ୍ରାପ୍ତ ପ୍ରସିଦ୍ଧ ଲେଖକମାନଙ୍କର ଉପନ୍ୟାସଗୁଡ଼ିକୁ ବଡ଼ ରୋଚକ ଢଙ୍ଗରେ ସଂକ୍ଷିପ୍ତ ଅନୁବାଦ କରି ଶିଶୁ କିଶୋର ବୟସ୍କ ପାଠକମାନଙ୍କ ପାଖରେ ଜନପ୍ରିୟ ହୋଇପାରିଛନ୍ତି । ଏହି ଅନୁବାଦ ପୁସ୍ତକଗୁଡ଼ିକ ବିଶ୍ୱ ସାହିତ୍ୟ ଗ୍ରନ୍ଥମାଳା କ୍ରମରେ କଟକ ଗ୍ରନ୍ଥମନ୍ଦିର ଆଦି ପ୍ରକାଶକ ସଂସ୍ଥାଦ୍ୱାରା ପ୍ରକାଶିତ ହେବା ଦ୍ୱାରା ଆଞ୍ଚଳିକ ଭାଷାର ପାଠକମାନେ ବିଶ୍ୱର ବିଭିନ୍ନ ଦେଶର ସାହିତ୍ୟ, ସଂସ୍କୃତି ଓ ଲୋକଜୀବନ ସମ୍ବନ୍ଧରେ ଜ୍ଞାନଲାଭ କଲେ । ଏହି ବିଶ୍ୱସାହିତ୍ୟ ଗ୍ରନ୍ଥମାଳାଗୁଡ଼ିକ ପ୍ରାୟ ସବୁ ପାଠାଗାର ଏବଂ ବିଦ୍ୟାଳୟ ପାଠାଗାରରେ ଶିକ୍ଷାର୍ଥୀଙ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ ।

ଅଧ୍ୟାପକ ଶ୍ରୀଧର ଦାସଙ୍କ ଜୀବନକାଳ ଥିଲା ତା.୦୪.୧୦.୧୯୦୧ରିଖରୁ ତା.୨୪.୦୪.୧୯୮୮ରିଖ । ଏହି ସମୟ ଥିଲା – ସମସ୍ୟା ଓ ସଂଘର୍ଷପୂର୍ଣ୍ଣ । ଦୁଇ ଦୁଇଟା ବିଶ୍ୱ ଯୁଦ୍ଧ । ଶାନ୍ତି ପ୍ରତିଷ୍ଠା । ଜାତିସଂଘର ପ୍ରତିଷ୍ଠା କାଳ । ଭାରତବର୍ଷରେ ଇଂରେଜ ରାଜତ୍ୱ ବିପକ୍ଷରେ ଜାତୀୟ ଆନ୍ଦୋଳନର ଅଭ୍ୟୁଦୟ କାଳ । ସେ ପରାଧୀନତାର ସଂଘର୍ଷ ଦେଖିବା ସହିତ ସ୍ୱାଧୀନତା ପ୍ରାପ୍ତି ପରେ ମଧ୍ୟ ଚାରି ଦଶନ୍ଧି ଜୀବିତ ରହି ପରିବର୍ତ୍ତନର ଅନୁଭୂତି ଅର୍ଜନ କରିଥିଲେ । ଶ୍ରୀ ଦାସ ଅଧ୍ୟାପନା ସହିତ ସଂସ୍କୃତ-ଇଂରାଜୀରୁ ଓଡ଼ିଆ ଅନୁବାଦ, ଭାଷାକୋଷ ସଂକଳନ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ ।

ସେ ନିଜର ଆତ୍ମଜୀବନୀ 'ସୁଅ ମୁହଁରେ ପତର' ଲେଖି ଯାଇଛନ୍ତି । ସେଥିରୁ ତତ୍‌କାଳୀନ ସାମାଜିକ, ରାଜନୈତିକ, ଅର୍ଥନୈତିକ, ପରିବେଶ ଓ ପରିସ୍ଥିତି କ'ଣ ଥିଲା ବୁଝିହୁଏ । ସେ ଅତ୍ୟନ୍ତ ଦରିଦ୍ର ପରିବାରେ ବହୁ ଦୁଃଖରେ ବଢ଼ି ଓ ପଢ଼ି ନିଜକୁ ଗଢ଼ିଥିଲେ । ତାଙ୍କର ବାପା,

ଚାଟଶାଳୀ ଶିକ୍ଷା ସାରି କିଛି ଟ୍ରେନିଂ ନେଇ ଗୋଟିଏ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରୁଥିଲେ । ସ୍ୱଳ୍ପ ଦରମା । ଘର ଖର୍ଚ୍ଚକୁ ଅଣ୍ଟୁ ନ ଥିଲା । ଏଣୁ ବାଳକ ଶ୍ରୀଧର, ଖାଲିପାଦରେ ଚାଲି ଚାଲି ନିଜର ଆହାର ଯୋଗାଡ଼ କରି ମେଧାବୀ ଥିବାରୁ ବୃତ୍ତି ପାଉଥିଲେ ।

ସେତେବେଳେ ଆମ ଓଡ଼ିଶା, ବିହାର ସହିତ ମିଶିଥିଲା । ଏଣୁ ଉଚ୍ଚଶିକ୍ଷା ପାଇଁ ଓଡ଼ିଶାର ଛାତ୍ରମାନେ ପାଟନା ଯାଇ ପଢୁଥିଲେ ଓ ପରୀକ୍ଷା ଦେଉଥିଲେ । ସ୍କୁଲ ଓ କଲେଜରେ ବଙ୍ଗାଳୀ ଛାତ୍ର ଓ ଶିକ୍ଷକଙ୍କ ବେଶ୍ ପତିଆରା ଦେଖିବାକୁ ମିଳୁଥିଲା । ନିଜ ଗ୍ରାମ ଚାଟଶାଳୀରେ ବିଦ୍ୟାରମ୍ଭ କଲା ପରେ କାକଟପୁର ନି.ପ୍ରା ବୃତ୍ତି ପାଇ ପଢ଼ିଲେ । ଖ୍ରୀ.୧୯୨୨ରେ ପୁରୀ ଜିଲ୍ଲା ସ୍କୁଲରୁ ଛାତ୍ରମାନଙ୍କ ମଧ୍ୟରେ ୧ମ ହୋଇ ମାଟ୍ରିକ୍ ପାସ୍ କଲେ । ପୁରୀ ଜିଲ୍ଲା ସ୍କୁଲରେ ପଢ଼ିବା ବେଳେ ସେ ଓଡ଼ିଶାର ବହୁ ଗଣ୍ୟମାନ୍ୟ ବ୍ୟକ୍ତି, ସ୍ୱାଧୀନତା ସଂଗ୍ରାମୀ, ସାହିତ୍ୟିକଙ୍କ ସମ୍ପର୍କରେ ଆସିଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ଗୋପବନ୍ଧୁ ଦାସ, ଆଚାର୍ଯ୍ୟ ହରିହର, ପଦ୍ମ ଚରଣ ପଟ୍ଟନାୟକ, ଜଗବନ୍ଧୁ ସିଂ(ଐତିହାସିକ), ଲକ୍ଷ୍ମୀନାରାୟଣ ସାହୁ, ଲକ୍ଷ୍ମୀନାରାୟଣ ପଟ୍ଟନାୟକ (ବିଜୁ ପଟ୍ଟନାୟକଙ୍କ ବାପା), ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ନାମ ଉଲ୍ଲେଖଯୋଗ୍ୟ । ସେ ପୁରୀର ବ୍ରାହ୍ମଣ ସମିତି ଛାତ୍ରାବାସରେ ରହି ପଢୁଥିଲେ । ପ୍ରଥମେ ବିହାରରେ ଇଂଜିନିୟରିଂ ପଢ଼ିବା ପାଇଁ ନାମ ଲେଖାଇ ମଧ୍ୟ ମନ ନ ମାନିବାରୁ କଳା ବିଭାଗରେ ନାମ ଲେଖାଇ ଆଇ.ଏ, ବି.ଏ, ଏମ୍. ଏ. ଓ ଶିକ୍ଷକତା ତାଲିମ ନେଇ ବିଭିନ୍ନ ବିଦ୍ୟାଳୟରେ ଶିକ୍ଷକତା କଲେ । ପାଟନା ବିଶ୍ୱବିଦ୍ୟାଳୟରୁ ୧୯୨୪ରେ ଆଇ.ଏ. ଏବଂ ୧୯୨୮ରେ ବି.ଏ. ପାଶ୍ କରି ମାସିକ ଦରମା ଟ.୭୦.୦୦ରେ ଓଲସିଂ ହାଇସ୍କୁଲରେ ଶିକ୍ଷକତା କଲେ । ୧୯୨୯ରେ କଟକ ଟ୍ରେନିଂ ସ୍କୁଲରୁ ବି.ଇଡ଼ି. ପାଶ୍ କଲେ । ମାତ୍ର ତାଙ୍କର ସାହିତ୍ୟିକ ଜୀବନ ପୁରୀ ଜିଲ୍ଲା ସ୍କୁଲରୁ ଆରମ୍ଭ ହୋଇଥିଲା । ରାଧାନାଥଙ୍କ ଜୀବନୀ ଉପରେ ପ୍ରବନ୍ଧ ଲେଖି ଉତ୍ସାହିତ ହୋଇ ଅଧିକ ଲେଖିଲେ ଓ ପୁରସ୍କୃତ ହେଲେ । ଆଇ.ଏ. ପଢ଼ିବା ଅବସରରେ ରଦାକତ୍ (ବିହାର) ଆଶ୍ରମରେ ତାଙ୍କର ରାଜେନ୍ଦ୍ର ପ୍ରସାଦଙ୍କ ସହିତ ସାକ୍ଷାତ୍ ହୋଇଥିଲା । ଡକ୍ଟର ରାଜେନ୍ଦ୍ର ପ୍ରସାଦ, ୧୯୫୦ରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଶିଳାନ୍ୟାସ ଉପଲକ୍ଷେ ଭୁବନେଶ୍ୱର ଆସିଥିଲେ । ସେ ସିନେଟ୍ ସଭ୍ୟ ଥାଇ ତାଙ୍କ ସହିତ ସାକ୍ଷାତ୍ କରିଥିଲେ । ଲାଲା ଲଜ୍‌ପତ୍ ରାୟ, ଆଶୁତୋଷ ମୁଖାର୍ଜୀ ସମେତ ବହୁ ମୁର୍ଦ୍ଧନ୍ୟ ବ୍ୟକ୍ତିଙ୍କ ସହିତ ସାକ୍ଷାତ୍ ଲାଭ କରିଥିଲେ । ବୌଦ୍ଧରାଜରେ ଶିକ୍ଷକତା କରି ସେ ଗଡ଼ଜାତ ରାଜ୍ୟର ପ୍ରଜାଙ୍କ ଚାଲିଚଳଣି ପରମ୍ପରା ସର୍ବୋପରି ଶାସନ ବ୍ୟବସ୍ଥା ସମ୍ପର୍କରେ ଅନେକ କଥା ଜାଣିଥିଲେ । ସେ ଘରୋଇ ଭାବେ ପରୀକ୍ଷା ଦେଇ ପାଟନା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାଶ୍ କରିଥିଲେ ।

ଅଧ୍ୟାପକ ଶ୍ରୀ ଦାସ ଅତ୍ୟନ୍ତ କଠୋର ପରିଶ୍ରମୀ, ସହନଶୀଳ, କର୍ମନିଷ୍ଠ, ଶୃଙ୍ଖଳିତ ବ୍ୟକ୍ତି ଥିଲେ । ବିଭିନ୍ନ ବିଦ୍ୟାଳୟରୁ ଶିକ୍ଷକତା ପରେ ଅବଶେଷରେ ଖ୍ରୀଷ୍ଟ ମହାବିଦ୍ୟାଳୟ (କଟକ)ରେ ସ୍ଥାୟୀ ଭାବରେ ଅଧ୍ୟାପନା କରି ୧୯୬୮ ମସିହାରୁ ଅବସର ନେଲେ । ଜୀବନବ୍ୟାପୀ ୪୪ ବର୍ଷ(୧୯୨୪-୧୯୬୮) ଶିକ୍ଷକତା କରିଥିବାରୁ ସେ ଛାତ୍ରମାନଙ୍କ ମାନସିକ ଅବସ୍ଥା ଶିକ୍ଷାପ୍ରଣାଳୀ ଓ ଶିକ୍ଷାଦାନ ସମ୍ବନ୍ଧରେ ବିପୁଳ ଜ୍ଞାନ ହାସଲ କରିଥିଲେ । ସେହି ଅଭିଜ୍ଞତାକୁ ପାଠ୍ୟପୁସ୍ତକ ରଚନାରେ ଉପଯୋଗ କରି ଜନପ୍ରିୟ ହୋଇଥିଲେ । ପାଠ୍ୟପୁସ୍ତକ ରଚନା ଜାତୀୟକରଣ ହେବା ପୂର୍ବରୁ ତାଙ୍କ ଲିଖିତ ଓ ପ୍ରକାଶିତ ବହିଗୁଡ଼ିକ ସରକାରୀ ମଞ୍ଜୁର ପାଇ ବିଭିନ୍ନ ଶ୍ରେଣୀରେ ପଢ଼ାଯାଉଥିଲା । ବ୍ରହ୍ମପୁର ଷ୍ଟୁଡ଼େଣ୍ଟସ ଷ୍ଟୋର ଏହି ପୁସ୍ତକଗୁଡ଼ିକ ଛାପି ଥିଲା । ଭଲ ରୟାଲିଟି ପାଇବାରୁ ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ହୋଇଥିଲା । ସେ ଅନ୍ୟାନ୍ୟ ଶିକ୍ଷକଙ୍କ ସହିତ ମିଶି କେତେକ ବହି ଛାପି ଥିଲେ । ବ୍ୟାକରଣ ବହିଟି ସଂସ୍କୃତ ପଣ୍ଡିତ ନାରାୟଣ ମହାପାତ୍ରଙ୍କ ସହ ସଂଯୁକ୍ତ ଲେଖକ ଭାବରେ ପ୍ରକାଶିତ ହେଲା । ଗ୍ରନ୍ଥମନ୍ଦିର କଟକ, ତାଙ୍କର ଅଭିଧାନଗୁଡ଼ିକ ଛାପି ଥିଲା । ୟୁନାଇଟେଡ଼ ଷ୍ଟେଟ୍ସ୍ ଅଫ୍ ଇନଫରମେସନ୍ ସର୍ଭିସ୍ ତରଫରୁ ତାଙ୍କର ଇଂରାଜୀରୁ ଅନୂଦିତ ୭ ଖଣ୍ଡ ବହି ନିର୍ବାଚିତ ହୋଇ ପାରିଶ୍ରମିକ ପାଇଥିଲେ ।

ତାଙ୍କର ତିନି ପୁଅ ଜଗନ୍ନାଥ ପ୍ରସାଦ, କୃଷ୍ଣପ୍ରସାଦ ଓ ରଘୁନାଥ ପ୍ରସାଦ ସମସ୍ତେ ପ୍ରତିଭାଧର ଓ ଉଚ୍ଚ ଶିକ୍ଷିତ ଥିଲେ । କଲେଜରେ ଅଧ୍ୟାପନା, ପାଠ୍ୟପୁସ୍ତକ ରଚନା, ଟୀକା ଟିପ୍ପଣୀ ସହିତ ଓଡ଼ିଆ ସାହିତ୍ୟର ବହୁ କାବ୍ୟ କବିତାର ମୁଖବନ୍ଧ ଲେଖିଛନ୍ତି । ନିରନ୍ତର ପଢ଼ିବା ଓ ଲେଖିବା କାରଣରୁ ୧୯୮୦ ବେଳକୁ ଦୃଷ୍ଟିଶକ୍ତି ହ୍ରାସ ଘଟିଲା । ସେ ୧୯୭୭ରେ ଉତ୍କଳ ସାହିତ୍ୟ ସମାଜ ଓ ୧୯୭୮ରେ ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ ହେବା ସହିତ ଆଦର୍ଶ ଗୁରୁର ସମ୍ମାନ ଲାଭ କରିଥିଲେ ।

ଏହି ନିରନ୍ତର ଲେଖନୀ ହସ୍ତ ସାରସ୍ୱତ ସାଧକଙ୍କ ଦେହାନ୍ତ ହୁଏ  ତା.୨୪.୦୪.୧୯୮୮ରେ । ସେ ଶିଶୁ ପାଠ୍ୟପୁସ୍ତକ ଓ ବ୍ୟାକରଣ ବହି ସମେତ ଜଣେ ଦକ୍ଷ ଅନୁବାଦକ ଓ ଶବ୍ଦକୋଷର ସଂକଳକ ଭାବରେ ନିଜର ସ୍ଥିତି ରଖିଯାଇଛନ୍ତି । ନିମ୍ନରେ ତାଙ୍କର ଶିଶୁ କିଶୋର ଉପଯୋଗୀ ପାଠ୍ୟପୁସ୍ତକ ଓ ବ୍ୟାକରଣ ବହିର ଏକ ତାଲିକା ପ୍ରଦାନ କରାଗଲା ।

**(କ) ପ୍ରକାଶିତ ପାଠ୍ୟପୁସ୍ତକ**

୧. ମନୋହର ପାଠ (୧ମ–୨ୟ)

୨. ପାଠ ପ୍ରଦୀପ (୩ୟ ଭାଗ )

୩. ପାଠ ବହି....(୪୩ ଭାଗ)

୪. କଥାମାଳା

୫. କଥାସୁମନ (୧ମ –୨ୟ)

୬. ଆମ ଦେଶର ଇତିହାସ ଗପ(୧ମ)

୭. ମଞ୍ଜୁଷା (୮ମ ଶ୍ରେଣୀ)

୮. ଜୀବନୀବର୍ତ୍ତିକା (୮ମ ଶ୍ରେଣୀ)

୯. ପଞ୍ଚପ୍ରଦୀପ

୧୦. ସାହିତ୍ୟ ମୁକୁର (୧ମ–୨ୟ)

୧୧. ପାଠକଳିକା (୧ମ–୨ୟ)

୧୨. ପାଠ କୁସୁମ

୧୩. ନୂତନ ସାହିତ୍ୟ ସଂଗ୍ରହ (୮ମ)

୧୪. ନବ ଇତିହାସ (୧ମ–୨ୟ)

୧୫. ନବ ଭୂଗୋଳ (୧ମ–୨ୟ)

**(ଖ) ପିଲାଙ୍କ ବ୍ୟାକରଣ ବହି**

୧. ଲଘୁ ବ୍ୟାକରଣ ପ୍ରବେଶ

୨. ସଂସ୍କୃତ ବ୍ୟାକରଣ ପ୍ରବେଶ

୩. ମଧ୍ୟ ବ୍ୟାକରଣ

୪. ସଂସ୍କୃତ ବ୍ୟାକରଣ ଓ ରଚନା

୫. ସରଳ ଓଡ଼ିଆ ବ୍ୟାକରଣ

୬. ମୌଳିକ ଲଘୁ ବ୍ୟାକରଣ ଓ ରଚନା

୭. ମୌଳିକ ମଧ୍ୟ ବ୍ୟାକରଣ ଓ ରଚନା

୮. ସରଳ ସଂସ୍କୃତ ବ୍ୟାକରଣ

୯. ଓଡ଼ିଆ ବ୍ୟାକରଣ (୧ମ–୨ୟ ଭାଗ)

**(ଗ) ଶବ୍ଦକୋଷ**

୧. ନବ ଅଭିଧାନ (ଓଡ଼ିଆ–ଇଂରାଜୀ)

୨. ବିବିଧ କୋଷ (ସଂଯୁକ୍ତ)

୩. ଷ୍ଟୁଡେଣ୍ଟ୍ସ  ଇଂଲିଶ–ଓରିଆ ଡିକ୍ସିନାରୀ

**(ଘ) ବିଶ୍ୱ ସାହିତ୍ୟରୁ ଅନୁବାଦ (ଇଂରାଜୀରୁ)**

୧. ରବିନ ହୁଡ଼

୨. ବିଚିତ୍ର କାହାଣୀ

୩. ଲିଓ ଟଲ୍‌ଷ୍ଟୟ (ଗଳ୍ପମାଳା)

୪. ଅଲିଭର ଟୁଇଷ୍ଟ

୫. ଗଲିଭର ଭ୍ରମଣ କାହାଣୀ

୬. ଅଶୀ ଦିନରେ ପୃଥିବୀ ଭ୍ରମଣ

୭. ବିଚିତ୍ର ତାବିଜ

୮. ପୃଥିବୀ ପାଇଁ ଜଳ

୯. ଶାନ୍ତି ପଥର ବୀର ସୈନିକ

୧୦. ଜର୍ଜ ଓ ଏଷ୍ଟିଙ୍ଗ ହାଉସ

୧୧. ଶିବାନୀ ପଲ୍ଲୀର କଳା ଚିତାବାଘ

୧୨. ବୃକ୍ଷ ଜଗତ

୧୩. ଆଲି ବାବା

୧୪. ସେକ୍ସପିୟର କାହାଣୀ (୧ମ–୨ୟ–୩ୟ)

୧୫. ଗ୍ରୀସ୍ ଦେଶର ଉପକଥା

୧୬. ସମୁଦ୍ର ଗର୍ଭରେ କୋଡ଼ିଏ ହଜାର ଲିଗ୍ ଭ୍ରମଣ

୧୭. ଟିମ୍ ସାୟାର

୧୮. ଚେକବ୍ କାହାଣୀ

୧୯. ଆଇଭାକ୍ ହୋ

୨୦. ରନ୍ ଦ୍ୱୀପ

୨୧. ଡାଭିଡ଼ କପର ଫିଲ୍ଡ

୨୨. ଟମ୍ କକାଙ୍କ କ୍ୟାବିନ୍

୨୩. ହୋମର କାହାଣୀ

୨୪. ଗର୍କୀ କାହାଣୀ

୨୫. ମୋପାସା କାହାଣୀ (୧ମ–୨ୟ)

୨୬. ଇଷପ୍ କାହାଣୀ

୨୭. ସୋରାବ ରୁସ୍ତମ୍

୨୮. ଋଷିଆ ଲୋକକାହାଣୀ

**ସଂସ୍କୃତରୁ ଅନୁବାଦ**

୧. ହିତକଥା

୨. ଜାତକ କାହାଣୀ ( ୧ମ – ୪ର୍ଥ)

୩. ମିତ୍ରଲାଭ (୧ମ–୪ର୍ଥ)

୪. ସୁହୃଦ ଭେଦ

୫. ସନ୍ଧି ଓ ବିଗ୍ରହ

୬. ପଞ୍ଚତନ୍ତ୍ର

୭. ମିତ୍ରଭେଦ (୧ମ–୨ୟ)

୮. ବେତାଳ ପଞ୍ଚବିଂଶତି

୯. ଶକୁନ୍ତଳା

**ଜୀବନୀ**

୧. ଗଙ୍ଗାଧର ମେହେର

୨. ନନ୍ଦକିଶୋର ବଳ

୩. କବିସୂର୍ଯ୍ୟ ବଳଦେବ

୪. ସାଧୁସୁନ୍ଦର ଦାସ

**ତାଙ୍କ ଆତ୍ମଜୀବନୀ**

ତାଙ୍କ ଲିଖିତ ଆତ୍ମଜୀବନୀ 'ସୁଅ ମୁହଁରେ ପତର'ରେ ଏହି ବିଦ୍ୱାନ୍ ଲେଖକ କହନ୍ତି– ''ମୋର ମନେହୁଏ ଯାହାବି ବିବେକାନୁମୋଦିତ, ତାହା ହିଁ ପୁଣ୍ୟଫଳ । ପିଲାଦିନେ ଚାଳଘର କଣା ବାଟେ ସୂର୍ଯ୍ୟ ଚନ୍ଦ୍ର ଦେଖିଛି । ଜୀବନରେ ପ୍ରତିଷ୍ଠା ଓ ପ୍ରଶଂସା ପାଇଛି ।''

ଶ୍ରାବସ୍ତୀ
୩୫, ବସନ୍ତ ବିହାର,ବ୍ରହ୍ମେଶ୍ୱର ମନ୍ଦିର ମାର୍ଗ
ଭୁବନେଶ୍ୱର–୧୮

# ସଙ୍ଗୀତ ସୁଧା ବାରିଧି : ସୁନନ୍ଦା ପଟ୍ଟନାୟକ

ପଣ୍ଡିତ ତ୍ରିଲୋଚନ ମିଶ୍ର

ଆଦି ଶଙ୍କର, ସନ୍ଥ ତୁଳସୀ, ସନ୍ଥ କବୀର, ମା' ମୀରାବାଈଙ୍କ କବିତାକୁ ଯେ ନିଜ କଣ୍ଠରେ ଜୀବନ୍ତ କରିଦେଉଥିଲେ, ସେ ହେଉଛନ୍ତି ଭାରତୀୟ ସଙ୍ଗୀତ ଜଗତର ଗୁରୁମା' ସଙ୍ଗୀତ ସୁଧା ବାରିଧି ସୁନନ୍ଦା ପଟ୍ଟନାୟକ । ୧୯୩୪ ମସିହା ନଭେମ୍ବର ମାସ ୭ ତାରିଖ ଦୀପାବଳି ସନ୍ଧ୍ୟାରେ ଓଡ଼ିଶାର ପୁରୁଣା ରାଜଧାନୀ କଟକ ସହରରେ ସବୁଜ କବି ବୈକୁଣ୍ଠ ପଟ୍ଟନାୟକଙ୍କ ଔରସରୁ ଜନ୍ମ ନେଇଥିଲେ ଏହି ମହୀୟସୀ ସଙ୍ଗୀତ ସାଧିକା ସୁନନ୍ଦା ଦେବୀ । ପିଲାଟି ଦିନରୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଭଜନ ଗାଇବାରେ ସେ ମଜ୍ଜି ରହୁଥିଲେ । ବିନା ଗୁରୁରେ ସେ ଧିରେ ଧିରେ ମୀରା ଭଜନ,ତୁଳସୀ ଭଜନ,କବୀର ଦୋହା, ଆଦିଶଙ୍କରଙ୍କ ଶ୍ରୀଜଗନ୍ନାଥ ଅଷ୍ଟକ ଗାଇ ସମସ୍ତଙ୍କୁ ଚକିତ କରିଦେଉଥିଲେ । ପିତାଙ୍କ ଆର୍ଥିକ ସ୍ଥିତି ସୁଦୃଢ଼ ନ ଥିବାରୁ କୌଣସି ଗୁରୁଙ୍କ ଘରାନାରେ ପାଦ ଦେବା ତାଙ୍କ ପାଇଁ ସ୍ୱପ୍ନ ଥିଲା । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ କୃପାରୁ ୧୯୪୭ ମସିହାରେ ମାତ୍ର ୧୪ ବର୍ଷ ବୟସରେ ଆକାଶବାଣୀର ସ୍ୱୀକୃତି ପାଇ ସଙ୍ଗୀତ ସାଧନାର ପରାକାଷ୍ଠା ପ୍ରଦର୍ଶନ କଲେ । ପିତା ବୈକୁଣ୍ଠ ନାଥ ପଟ୍ଟନାୟକଙ୍କ ରଚିତ କାଳଜୟୀ ସଙ୍ଗୀତ ସବୁକୁ ସେ ନିଜ ଅମୃତବୋଳା କଣ୍ଠରେ ଗାଇ ପିତାଙ୍କ ପାଇଁ ସ୍ୱତନ୍ତ୍ର ପରିଚୟ ଆଣି ଦେଇଥିଲେ ।

ଓଡ଼ିଶାର ରାଜ୍ୟପାଳ ଆସଫ୍ ଅଲ୍ଲୀ ତାଙ୍କ ସଙ୍ଗୀତ ଗାୟନରେ ମୁଗ୍ଧ ହୋଇ ତାଙ୍କୁ ରାଜଭବନ ଆଣି ସମ୍ମାନିତ କରିଥିଲେ । ଏପରିକି ଭାରତର ମହାମାନ୍ୟ ରାଷ୍ଟ୍ରପତି ଶ୍ରୀଯୁକ୍ତ ରାଜେନ୍ଦ୍ର ପ୍ରସାଦଙ୍କ ଓଡ଼ିଶା ଗସ୍ତ ସମୟରେ ସୁନନ୍ଦା ଦେବୀଙ୍କୁ ରାଜଭବନକୁ ଡକାଇ ତାଙ୍କଠାରୁ କେତୋଟି ମୀରାଭଜନ,କବୀର ଦୋହା ଆଦି ଶଙ୍କର ବିରଚିତ ଶ୍ରୀଜଗନ୍ନାଥ ଅଷ୍ଟକ ଶୁଣାଇ ଦେଲେ । ରାଷ୍ଟ୍ରପତି ଅତ୍ୟନ୍ତ ପ୍ରୀତ ହୋଇ ସୁନନ୍ଦା ଦେବୀଙ୍କ କେହି ଗୁରୁ ନ ଥିବା ଜାଣି ନିଜର ବନ୍ଧୁ ମହାନ୍ ସଙ୍ଗୀତ ଗୁରୁ ପଣ୍ଡିତ ବିନାୟକ ରାଓ ପଟ୍ଟବର୍ଦ୍ଧନଙ୍କଠାରୁ ସଙ୍ଗୀତ ଶିକ୍ଷା ନେବାର ବ୍ୟବସ୍ଥା କରିଦେଲେ । ଏଥିପାଇଁ ପ୍ରତି ମାସରେ ରାଷ୍ଟ୍ରପତିଙ୍କ ଅନୁଦାନ ୫୦ ଟଙ୍କା ଓ ରାଜ୍ୟପାଳଙ୍କ ଅନୁଦାନ ୨୫ ଟଙ୍କା ସୁନନ୍ଦା ଦେବୀଙ୍କୁ ଦେବା ବ୍ୟବସ୍ଥା କରାଇଦେଲେ । ଗୁରୁଙ୍କ କୃପାରୁ ସଙ୍ଗୀତ ସାଧନାରେ ସଫଳ ହୋଇ ସେ ଦିଲ୍ଲୀ, କଲିକତା, ବମ୍ବେ,ମାଡ୍ରାସ, ପାଟନା,ପୁନେ ସଙ୍ଗୀତ ସମାରୋହରେ ଶ୍ରେଷ୍ଠ ସ୍ଥାନ ଅଧିକାର କରି ଓଡ଼ିଶାର ନାମକୁ ବହୁ ଉଚ୍ଚ ସ୍ଥାନକୁ ନେଇଗଲେ ଓ ସଙ୍ଗୀତ ସୁଧାବାରିଧି ସମ୍ମାନରେ ସମ୍ମାନିତ ହେଲେ ।

ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ବାବୁ ସୁନନ୍ଦା ଦେବୀଙ୍କ ଉଚ୍ଚ ପ୍ରଶଂସକ ଥିଲେ ଓ ଓଡ଼ିଶାରେ ଏକ ଗୁରୁକୁଳ ସ୍ଥାପନା ପାଇଁ ତାଙ୍କୁ ଅନୁରୋଧ କରିବା ସହ ଶ୍ରୀକ୍ଷେତ୍ରରେ ଏକ ଜମି ଯୋଗାଇ ଦେଲେ । ନିଜ ପ୍ରାଣର ଠାକୁର ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଧାମରେ ଗୁରୁକୁଳ ଖୋଲିବାର ସୌଭାଗ୍ୟ ମିଳିଥିବାରୁ ସେ ଅତ୍ୟନ୍ତ ତୃପ୍ତ ହେବା ସହ ତୁରନ୍ତ ଗୁରୁକୁଳ ପ୍ରାରମ୍ଭ କରିଥିଲେ । ତାଙ୍କ ସାଧନାମୟ ଜୀବନକୁ ନେଇ ନୀଳମାଧବ ନାମରେ ଏକ ଚଳଚ୍ଚିତ୍ର ପ୍ରସ୍ତୁତ କରାଗଲା ଓ ଏହା ରାଷ୍ଟ୍ରିୟ ଚଳଚ୍ଚିତ୍ର ପୁରସ୍କାର ଲାଭ କଲା । ୧୯୭୫ରେ ସେ ଅଖିଳ ଭାରତ ଗାନ୍ଧର୍ବ ବିଦ୍ୟାଳୟରୁ ଡକ୍ଟରେଟ୍ ଓ ୧୯୯୯ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସାହିତ୍ୟରେ ଡକ୍ଟରେଟ୍ ସମ୍ମାନ ପ୍ରାପ୍ତ ହେଲେ । ଏଥିସହ ଇଣ୍ଡିଆନ୍ ଲାଇଫ୍ ଟାଇମ୍ ଆଚିଭ୍‌ମେଣ୍ଟ ସମ୍ମାନ,ଉତ୍କଳ ରତ୍ନ ସମ୍ମାନ,ସଙ୍ଗୀତ ନାଟକ ଏକାଡେମି ସମ୍ମାନ ଭଳି ଅନେକ ମାନ ସମ୍ମାନର ସେ ଅଧିକାରିଣୀ ଅଟନ୍ତି । ଆଜି ସେ ନିଜର ପ୍ରାଣର ପ୍ରାଣ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖକୁଚାଲି ଯାଇଥିଲେ ମଧ୍ୟ ଆମ ଭବିଷ୍ୟତ ପିଢ଼ିଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇ ରହିଯାଇଛନ୍ତି ।

ପ୍ରକୃତିବନ୍ଧୁ ଭବନ,କାକଟପୁର, ପୁରୀ

# ଓଡ଼ିଆ ସାହିତ୍ୟର ଅନନ୍ୟ ରୂପକାରଃ ମନୋଜ ଦାସ

ଡଃ ସସ୍ମିତା ନାୟକ

ଭାରତୀୟ କଥା ସାହିତ୍ୟର ଅନନ୍ୟ ରୂପକାର ପଦ୍ମଭୂଷଣ ଶ୍ରୀଯୁକ୍ତ ମନୋଜ ଦାସ, ତାଙ୍କର ଭାଷା ଓ ଆବେଗପୂର୍ଣ୍ଣ କଥନ ଭଙ୍ଗୀ ଆତ୍ମୀୟତାରେ ସିକ୍ତ । କଥାକାର ଓ ଚନ୍ତାନାୟକ ପଦ୍ମଭୂଷଣ ଶ୍ରୀଯୁକ୍ତ ମନୋଜ ଦାସ । ସେ ୧୯୩୪ ମସିହା ଫେବୃୟାରୀ ୨୭ ତାରିଖରେ ବାଲେଶ୍ୱର ଜିଲ୍ଲାର ଭୋଗରାଇ ବ୍ଲକ୍ ସ୍ଥିତ ଶଙ୍ଖାରୀ ଗ୍ରାମରେ ପିତା ମଧୁସୂଦନ ଦାସ ଓ ମାତା କାଦମ୍ବିନୀ ଦେବୀଙ୍କ କୋଳମଣ୍ଡନ କରିଥିଲେ । ପିଲାବେଳରୁ ପ୍ରଚଣ୍ଡ ପ୍ରତିଭାବାନ୍ ମନୋଜ କବିତା ଲେଖିବା ଆରମ୍ଭ କରିଦେଇଥିଲେ । ପିତା ମଧୁସୂଦନ ଦାସ ଓ ମାତା କାଦମ୍ବିନୀ ଦେବୀଙ୍କର ଥିଲେ ଦୁଇ ପୁଅ ଓ ତିନି ଝିଅ । ବଡ଼ ପୁଅ ସ୍ୱର୍ଗତ ମନ୍ମଥ ଦାସ ଭାରତର ଜଣେ ବିଶିଷ୍ଟ ଐତିହାସିକ ଭାବେ ପରିଚିତ ଥିଲାବେଳେ, ସାନପୁଅ ମନୋଜ ଥିଲେ ବିଶ୍ୱ ସାହିତ୍ୟ ଜଗତର ଏକ ଉଜ୍ଜ୍ୱଳତମ ନକ୍ଷତ୍ର ।

ମନୋଜ ଦାସଙ୍କର ଖଡ଼ିଛୁଆଁ ଆରମ୍ଭ ହୋଇଥିଲା, ନିଜ ଗାଁ ଶଙ୍ଖାରୀ ନିମ୍ନ ପ୍ରାଥମିକ ବିଦ୍ୟାଳୟରେ । ସେ ୧୯୫୯ ମସିହାରେ ଇଂରାଜୀରେ ଏମ୍.ଏ ପାଶ୍ କଲେ ଓ ସେହି ବର୍ଷ କୁଜଙ୍ଗର ବିଶିଷ୍ଟ ଜମିଦାର ତଥା ସ୍ୱାଧୀନତା ସଂଗ୍ରାମୀ ନାରାୟଣ ବୀରବର ସାମନ୍ତଙ୍କ କନ୍ୟା ପ୍ରତିଜ୍ଞା ସାମନ୍ତଙ୍କୁ ବିବାହ କରିଥିଲେ । ପିତାମାତାଙ୍କର ସୁଯୋଗ୍ୟ ସନ୍ତାନ ମଣ୍ଟୁ (ମନୋଜ), ଗଣ ସଙ୍ଗୀତର ଗୀତିକାର ଗାୟକ ମଧ୍ୟ ଥିଲେ । ଶଙ୍ଖାରୀରେ ଗୋଟିଏ ଯାତ୍ରା ଦଳ କରିଥିଲେ ପିତା ମଧୁବାବୁ, ସେହିଦିନଠାରୁ ଅଭିନୟ ଓ ସଙ୍ଗୀତ ପ୍ରତି ଅନୁରାଗ ବଢ଼ିଥିଲା, କଲେଜ ଡ୍ରାମାରେ ନିଜେ ଗୀତ ଲେଖି ସବୁ ସଂଯୋଜନା କରିବା ସହ ସଙ୍ଗୀତ ନିର୍ଦ୍ଦେଶନା ଦେଉଥିଲେ । ବିଭିନ୍ନ ସଭା ସମ୍ମିଳନୀରେ ସେ ହାର୍‌ମୋନିୟମ୍ ଧରି ଗୀତ ଗାଇବାବେଳେ ଶହ ଶହ ଶ୍ରୋତା ତାଙ୍କୁ ଆନନ୍ଦରେ ଉପଭୋଗ କରୁଥିଲେ ।

୧୯୫୫-୫୬ ମସିହାରେ ଭାରତୀୟ ଗଣନାଟ୍ୟ ସଂଘର ଏକ ଶାଖା ସ୍ଥାପନ ହୋଇଥିଲା । କଟକରେ ଏହାର ପ୍ରଥମ ସମ୍ମିଳନୀ ହୋଇଥିଲା । ମନୋଜ ଦାସଙ୍କ ରଚିତ ବହୁ ଗଣ ସଙ୍ଗୀତ, '' ସୂର୍ଯ୍ୟ ଉଠେ ଦୂରରେ...'' ଆମେ ଶାନ୍ତକାମୀ ଆମେ ମୁକ୍ତିକାମୀ...ଚାଷୀ ଭାଇରେ ପକା ତୋର ଦା' ହତିଆର....'' ଆମ ଗାଁ' କ୍ଷେତ ବୁକେ ସୁନାର ଫସଲ...'' ଆଦି ବହୁ କଣ୍ଠରେ ସେତେବେଳେ ଧ୍ୱନିତ ହେଉଥିଲା । ବ୍ରହ୍ମପୁରରେ ନିଖିଳ ଉତ୍କଳ ଛାତ୍ରସଂଘର ସମ୍ମିଳନୀର ଖୋଲା ଅଧିବେଶନରେ ତାଙ୍କ ସ୍ୱରଚିତ ଓ କଣ୍ଠ ନିସୃତ ଗଣ ସଙ୍ଗୀତ ହଜାର ହଜାର ଶ୍ରୋତାଙ୍କୁ ମୁଗ୍ଧ କରିଥିଲା ।

ମନୋଜ ଦାସ ଫକୀର ମୋହନ କଲେଜରେ ପଢ଼ିବା ବେଳେ ବାମପନ୍ଥୀ ବିଚାରଧାରା ପ୍ରତି ଆକୃଷ୍ଟ ହେବା ସହ ଛାତ୍ର ରାଜନୀତିରେ ଯୋଗ ଦେଇଥିଲେ ଏବଂ କଲେଜ ଛାତ୍ର ସଂସଦର ସଭାପତି ନିର୍ବାଚିତ ହୋଇଥିଲେ । ଜଣେ ବିପ୍ଳବୀ ଛାତ୍ର ନେତା ଓ ଛାତ୍ର ସଂଘର ରାଜ୍ୟ ସଭାପତି ରୂପେ ମନୋନୀତ ହୋଇଥିଲେ । ଛାତ୍ର ଆନ୍ଦୋଳନରେ ନେତୃତ୍ୱ ନେବା ଯୋଗୁଁ ସେତେବେଳେ ତାଙ୍କୁ ବେଶ୍ କିଛି କାଳ ଜେଲ୍‌ରେ ମଧ୍ୟ କଟାଇବାକୁ ପଡ଼ିଥିଲା । ସରଳ ବ୍ୟକ୍ତିତ୍ୱ ଉଚ୍ଚକୋଟୀର ବକ୍ତୃତା ମାଧ୍ୟମରେ ଓଡ଼ିଆ ସାହିତ୍ୟ ଜଗତରେ ଗୋଟିଏ ମହାମାନ୍ୟ ପୁରୁଷ ଭାବରେ ସେ ବେଶ୍ ପରିଚିତ । ତାଙ୍କର ଅଭିଭାଷଣ ବେଶ୍ ଚମତ୍କାର ।

ସ୍ୱାଧୀନତା ପରବର୍ତ୍ତୀ କାଳର ପ୍ରତିଭାବନ୍ତ ଓଡ଼ିଆ ଗାଳ୍ପିକମାନଙ୍କ ମଧ୍ୟରେ ଗାଳ୍ପିକ ମନୋଜ ଦାସ ହେଉଛନ୍ତି ଜଣେ ସୁନାମଧନ୍ୟ ଓ ଯଶସ୍ୱୀ ଗଳ୍ପସ୍ରଷ୍ଟା,ଅନୁଭୂତିପ୍ରବଣ ବ୍ୟକ୍ତି ମାନସର ଚିତ୍ର ଓ ବ୍ୟକ୍ତି ହୃଦୟର ମନସ୍ତାତ୍ତ୍ୱିକ ଚେତନାକୁ ପ୍ରକାଶ କରିବାରେ ସେ ଜଣେ କୁଶଳୀ ଶିଳ୍ପୀ, ତାଙ୍କର ପ୍ରତ୍ୟେକ ଗଳ୍ପକଳା ଦୃଷ୍ଟିରୁ ଯେପରି ସ୍ୱାତନ୍ତ୍ର୍ୟ ରକ୍ଷା କରିଥାଏ ସେହିପରି ଭାବରେ ମଧ୍ୟ ପୂର୍ବବର୍ତ୍ତୀ ସୃଷ୍ଟିଠାରୁ ପ୍ରବଣତା ରକ୍ଷା କରିଥାଏ ।

ଶ୍ରୀଯୁକ୍ତ ଦାସ ହେଉଛନ୍ତି ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଗାଳ୍ପିକ । ଗାଳ୍ପିକ ଗଳ୍ପର କାହାଣୀ ନିର୍ବାଚନରେ 'ସ୍ୱତନ୍ତ୍ରତା' ପରିବେଷଣର ନାଟକୀୟତା ବୌଦ୍ଧିକତା ଶାଣିତ ଦୃଷ୍ଟିଭଙ୍ଗୀ ଓ ବ୍ୟଙ୍ଗାତ୍ମକ ଦୃଷ୍ଟିକୋଣ ତାଙ୍କ ଗଳ୍ପଗୁଡ଼ିକର ବିଶେଷତ୍ୱ ପ୍ରକାଶ କରିଥାଏ । ମନୋଜ ଦାସଙ୍କ ପ୍ରତିଟି ଗଳ୍ପ ସମସ୍ତଙ୍କୁ ଚମତ୍କୃତ କରିଦିଏ ଆଉ ଏକ ସ୍ତରକୁ ନେଇଯାଏ । ମନୋଜ ଦାସ ସବୁବେଳେ କୁହନ୍ତି–''ଯେଉଁ ଲେଖାରେ ପ୍ରେରଣା ନାହିଁ ,ତାହା କେବେ କାଳଜୟୀ ହୋଇପାରେନା'' । ମନୋଜ ଦାସଙ୍କ ଗଳ୍ପଗ୍ରନ୍ଥଗୁଡ଼ିକ ମଧ୍ୟରେ ସମୁଦ୍ରର କ୍ଷୁଧା(୧୯୫୦), 'ଜୀବନର ସ୍ୱାଦ' (୧୯୫୨), ବିଷ କନ୍ୟାର କାହାଣୀ(୧୯୫୪), ଆରଣ୍ୟକ(୧୯୬୦), ଶେଷ ବସନ୍ତର ଚିଠି(୧୯୬୬), ମନୋଜ ଦାସଙ୍କ କଥା ଓ କାହାଣୀ(୧୯୭୧), ଲକ୍ଷ୍ମୀର ଅଭିସାର(୧୯୭୪), ଆବୁ ପୁରୁଷ ଓ ଅନ୍ୟାନ୍ୟ ଗଳ୍ପ(୧୯୭୫), ଧୁମ୍ରାଭ ଦିଗନ୍ତ(୧୯୭୭), ମନୋଜ ପଞ୍ଚବିଂଶତି(୧୯୮୩), ଭନ୍ନ ମଣିଷ ଓ ଅନ୍ୟାନ୍ୟ କାହାଣୀ(୧୯୮୮), ଅବୋଲକରା କାହାଣୀ(୧୯୯୧), ମନୋଜ ଦାସଙ୍କ ଗଳ୍ପ (୧୯୯୨)ପ୍ରଭୃତି ଉଲ୍ଲେଖଯୋଗ୍ୟ । ସ୍ୱାଧୀନତା ପରେ ବହୁ କଥାକାରଙ୍କର ଆବିର୍ଭାବ ଘଟିଛି । ସେମାନଙ୍କ ଭିତରୁ ବର୍ଣ୍ଣ କଥା ସାହିତ୍ୟର ଯଶସ୍ୱୀ ଲେଖକ ଭାରତୀୟ ସଂସ୍କୃତି ତଥା ଜୀବନ ଚଳଣିର ବିଶ୍ୱସ୍ତ ରୂପକାର କୋଟି ହୃଦୟର ପ୍ରିୟ କଥାକାର ମନୋଜ ଦାସ ଭାରତୀୟ ସାହିତ୍ୟ ଜଗତର ଏକମାତ୍ର ପ୍ରଜ୍ଞାପୁରୁଷ ଭାବେ, ସେ ଥିଲେ ତିନି ପିଢ଼ିର ଶିକ୍ଷକ,ଅଭିଭାବକ ଓ ଦିଗ୍‌ଦର୍ଶକ । ଭାରତୀୟ କଥା ସାହିତ୍ୟର ଶିଖର ପୁରୁଷ,ଆଧୁନିକ ବିଷ୍ଣୁ ଶର୍ମା ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲେଖକ ଶ୍ରୀ ଅରବିନ୍ଦ ଦର୍ଶନର ବିଦ୍ୱାନ୍ ଭାଷ୍ୟକାର ପଦ୍ମଭୂଷଣ ମନୋଜ ଦାସ ସାମ୍ପ୍ରତିକ ମଣିଷର ଅସହାୟ ବ୍ୟକ୍ତି ଆତ୍ମାକୁ କ୍ଷୁଦ୍ର ଗଳ୍ପରେ ପ୍ରକାଶ କରିଛନ୍ତି । ଓଡ଼ିଆ ସାହିତ୍ୟରେ ଫକୀର ମୋହନଙ୍କ ପଦାଙ୍କ ଅନୁକରଣ କରିଛନ୍ତି ମନୋଜ ଦାସ ।

ସ୍ୱାଧୀନତା ପରବର୍ତ୍ତୀ କାଳର ଶ୍ରେଷ୍ଠ ରମ୍ୟ ରଚନାକାର ହେଉଛନ୍ତି ମନୋଜ ଦାସ । ରମ୍ୟ ରଚନା ଦିଗରେ ମନୋଜ ଦାସ ଜଣେ ଚର୍ଚ୍ଚିତ ବ୍ୟକ୍ତିତ୍ୱ । ତାଙ୍କର 'ଅନ୍ତରଙ୍ଗ', 'ଭାରତ', 'କେତେ ଦିଗନ୍ତ', 'ବିପୁଳାଚ ପୃଥ୍ୱୀ', 'ଅରଣ୍ୟ ଉଲ୍ଲାସ' ସ୍ୱତନ୍ତ୍ରତା ବାରି ହୋଇପଡ଼େ ।

ଅତି ଛୋଟବେଳୁ ସେ ସାହିତ୍ୟ ପ୍ରତି ଦୁର୍ବଳତାକୁ ଏଡ଼ାଇ ନ ପାରି ମଣିଷର ଅସହାୟତାବୋଧ କିପରି ସାହିତ୍ୟକୁ ସେତେବେଳେ ପ୍ରଭାବିତ କରିବାକୁ ଆରମ୍ଭ କରିଥିଲା ଓ ମାର୍କସୀୟ ଦର୍ଶନର ପ୍ରଭାବ ମଧ୍ୟ ନୂଆ କରି ପ୍ରବେଶ କରୁଥିଲା ଗଳ୍ପରେ । ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଦଶମ ଶ୍ରେଣୀରେ ପାଠ ପଢୁଥିବା ମନୋଜ 'ଦିଗନ୍ତ' ସମ୍ପାଦନା କରୁଥିଲେ ।

ଆଦର୍ଶକୁ ସେ ଅତି ପାଖରୁ ସାଉଁଟିଛନ୍ତି । ଜନ୍ମରୁ ସେ ନାସ୍ତିକ ଓ ପରେ ସେ ଆସ୍ତିକରେ ପରିଣତ ହୋଇଥିଲେ । ଜୀବନର ସମଗ୍ର ସୃଷ୍ଟି ପଛରେ ଏକ ଦିବ୍ୟ ଉଦ୍ୟମ ରହିଛି । ମାନବିକ ସଂପ୍ରୀତି, ଆଧ୍ୟାତ୍ମିକତା, ରହସ୍ୟବାଦ, ସମ୍ବେଦନଶୀଳତା, ଭାଷା ଚୟନ ଓ ଚିତ୍ରକଳ୍ପ ପ୍ରୟୋଗରେ ଚମତ୍କାରିତା ଆଦି ବହୁବିଧ ବିଶେଷତ୍ୱର ସମନ୍ୱୟରେ ସେ ଏକ ସ୍ୱତନ୍ତ୍ର ସାରସ୍ୱତ ଜଗତ ସୃଷ୍ଟି କରିପାରନ୍ତି । ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପ୍ରଖ୍ୟାତ ଗାଳ୍ପିକ ମନୋଜ ଦାସଙ୍କର ଶ୍ରେଷ୍ଠ ଗଳ୍ପ ହେଲା–''ଶେଷ ବସନ୍ତର ଚିଠି'' ଏକ ମାର୍ମିକ ଉପସ୍ଥାପନା, ଶିଶୁ ମନସ୍ତତ୍ତ୍ୱକୁ ନେଇ ଏଇ ଗଳ୍ପଟି ରଚିତ ।

ମନୋଜ ଦାସଙ୍କ ପ୍ରସିଦ୍ଧ ଗଳ୍ପଗୁଡ଼ିକ ମଧ୍ୟରେ ''ଅପହୃତ ଟୋପିର ରହସ୍ୟ'' ''ଶେଷ ବସନ୍ତର ଚିଠି'' ଓ ''ଅତିକ୍ରାନ୍ତ'' ବେଶ୍ ମନଛୁଇଁ ପାରିଛି ।

ପ୍ରାଚୀନ ଭାରତର ଯଶସ୍ୱୀ କଥାକାର ସୋମବେଦ ଓ ବିଷ୍ଣୁ ଶର୍ମାଙ୍କ ଗଳ୍ପର ଭିତ୍ତି ଉପରେ ତାଙ୍କର ଗଳ୍ପଗୁଡ଼ିକ ପ୍ରାୟ ଆଧାରିତ । ଅବୋଲକରାର କାହାଣୀ ଲେଖକଙ୍କୁ ବିଶେଷ ପ୍ରଭାବିତ କଲା ଭଳି ମନେ ହୁଏ । ତା'ଛଡ଼ା ଆଧୁନିକ ଭାରତର ଆଧ୍ୟାତ୍ମିକ ଦିଗଦ୍ରଷ୍ଟା ମହାମନୀଷୀ ଅରବିନ୍ଦଙ୍କର ଦର୍ଶନର ବିପୁଳ ଭିତ୍ତି ଉପରେ ତାଙ୍କର ଗଳ୍ପଗୁଡ଼ିକ ପ୍ରାୟ ଆଧାରିତ । ମନୋଜ ଦାସ ତାଙ୍କର ଗଳ୍ପରେ ଫାଣ୍ଟାସି ପ୍ରୟୋଗ କରିଥା'ନ୍ତି । 'ଆରଣ୍ୟକ' ହୃଦୟ ପରିବର୍ତ୍ତନ ସଂକ୍ରାନ୍ତୀୟ ଏକ କାହାଣୀ ହୋଇଥିବା ବେଳେ ''ଲକ୍ଷ୍ମୀର ଅଭିସାର'' ଗଳ୍ପରେ ଜଣେ ଆଧୁନିକ ଗଳ୍ପ ଜଗତରେ ସେ ବିଷ୍ଣୁ ଶର୍ମା ନାମରେ ପରିଚିତ ।

୧୯୪୯ରେ ଲିଖିତ ''ସମୁଦ୍ରର କ୍ଷୁଧା'' ମନୋଜ ଦାସଙ୍କର ପ୍ରଥମ ଗଳ୍ପ । ଦ୍ୱିତୀୟ ବିଶ୍ୱଯୁଦ୍ଧର ନୃଶଂସ ପୃଷ୍ଠଭୂମି ଉପରେ ଏହା ଲିଖିତ । ଏହା ହିଁ 'ସମୁଦ୍ରର କ୍ଷୁଧା'ର କଥାବସ୍ତୁ । 'ମଧୁବନ ମେୟର','ବ୍ୟାଘ୍ର ରୋହଣ', 'ଷ୍ଟାଚ୍ୟୁ', 'କିମ୍ପିରୀଣି', 'କଙ୍କୁ ବାଇନ'ପ୍ରଭୃତି ଗଳ୍ପରେ ସେ ସମାଜର ଅଧଃପତନ, ବ୍ୟଭିଚାର ଓ ଅମାନୁଷିକତାର ଭୟାବହ ଚିତ୍ରକୁ ଦର୍ଶାଇଛନ୍ତି । କଲେଜରେ ପଢ଼ିଲାବେଳେ ଦ୍ୱିତୀୟ ଗଳ୍ପ ସଂକଳନ ''ବିଷ କନ୍ୟାର କାହାଣୀ'', 'ସମୁଦ୍ରର କ୍ଷୁଧା', 'ଆରଣ୍ୟକ' ଓ 'ପ୍ରତ୍ୟାଗତର କାହାଣୀ' ଆଦି ଗଳ୍ପଗୁଡ଼ିକରେ ମଣିଷର ଯୌନାକାଂକ୍ଷାର ହିଂସ୍ର ସ୍ୱରୂପକୁ ଚମତ୍କାର ଭାବରେ ଦେଖାଇ ଦିଆଯାଇଛି ।

''ବିଷ କନ୍ୟାର କାହାଣୀ'' ଗଳ୍ପରେ ଦେହ ବ୍ୟବସାୟୀ ହୀରାର ଅଶ୍ଳୀଳ ଜୀବନର ଚିତ୍ରକୁ ଏପରି ଭାବରେ ପ୍ରକାଶ କରାଯାଇଛି, ଯାହାକି ପାଠକର ଅନ୍ତରରେ ସ୍ୱତଃ ସମବେଦନା ସୃଷ୍ଟି କରିଥାଏ । ଏହି ଗଳ୍ପର ଯୌନ ଚିତ୍ର ପାଠକର ସୂକ୍ଷ୍ମ ସତ୍ତାକୁ ଉଜ୍ଜୀବିତ କରି ଅନ୍ୟ ଏକ ମହତର ମାନବିକ ବ୍ୟକ୍ତି ସତ୍ତାରେ ତାହାକୁ ରୂପାନ୍ତରିତ କରିଦେଇଥାଏ । ଏଥିରେ ନାରୀର ଯୌନ ବିଳାସ ନାହିଁ । ମାତ୍ର ବଞ୍ଚିବା ପାଇଁ ଅଛି ଚରମ ସଂଘର୍ଷ ।

ମଣିଷ ସମାଜର ସମସ୍ତ ରାଜନୈତିକ ଆର୍ଥିକ ସାମାଜିକ ଓ ଆଧ୍ୟାତ୍ମିକ ଆଚରଣ ବିଧି ସହିତ ସେ ବିଭିନ୍ନ ବ୍ୟଭିଚାରକୁ ତାଙ୍କ ଗଳ୍ପରେ ରୂପ ଦେଇଛନ୍ତି । ମଣିଷ ପ୍ରତି ତାଙ୍କର ଗଭୀର ମମତ୍ୱବୋଧ, ଛଳନା, କୂଟ କପଟତା ପ୍ରତି ତୀବ୍ର କଟାକ୍ଷ ବିଷୟରେ ବିଶ୍ଳେଷଣ କରିବାରେ ପ୍ରଖର ଅନ୍ତର୍ଦୃଷ୍ଟି ପ୍ରତିଟି ଗଳ୍ପକୁ ତାଙ୍କର ସରସ ସୁନ୍ଦର ଏବଂ ଜୀବନ୍ତ କରିଛି ।

୧୯୬୩ରେ ମୋଡ଼ ବଦଳି ଯାଏ । ତାଙ୍କ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ହୋଇ ଅରବିନ୍ଦ ଦର୍ଶନରେ ପ୍ରଭାବିତ କେବଳ ଓଡ଼ିଆ କାହିଁକି ବିଶ୍ୱର ବହୁ ପ୍ରତିଷ୍ଠିତ ଇଂରାଜୀ ପତ୍ରିକାରେ ପ୍ରକାଶ ପାଏ ତାଙ୍କର ଲେଖା, ଆଧ୍ୟାତ୍ମିକତା ଜୀବନର ଲକ୍ଷ୍ୟ ମୌଳିକ ପ୍ରଶ୍ନ ସମସ୍ତ ପୁରସ୍କାରକୁ କୃତଜ୍ଞତାର ସହ ସମ୍ମାନ ଗ୍ରହଣ କରେ । ପ୍ରତିଟି ପାଠକର ହୃଦୟରେ ସେ ଜଣେ ଉଚ୍ଚକୋଟୀର ଲେଖକ ଭାବେ ଆସନ ଜମାଇ ରହିଛନ୍ତି ଓ ରହିବେ ମଧ୍ୟ । ଅଧ୍ୟାପନା ସହ ମିଶିଯାଏ ଆଧ୍ୟାତ୍ମିକତା, ''The Times of India'', ''Hindustan Times'' ଓ ''The Hindu'' ଭଳି ପ୍ରସିଦ୍ଧ ଇଂରାଜୀ ଦୈନିକରେ ସ୍ତମ୍ଭ ରଚନା କରିବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ । ସେ କେବଳ ଜଣେ ଲେଖକ ନ ଥିଲେ ଥିଲେ ଏକ ଦିବ୍ୟ ଚେତନାର ପ୍ରବକ୍ତା, ତାଙ୍କର ସୃଷ୍ଟି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ମନୋଜ ଦାସ ଓଡ଼ିଆ ସାହିତ୍ୟ ଜଗତର ଏକ ଉଜ୍ଜ୍ୱଳତମ ତାରକା ଥିଲେ । ସାହିତ୍ୟ ଜଗତରେ ଯେଉଁଭଳି ପ୍ରସିଦ୍ଧ ଥିଲେ ଆଧ୍ୟାତ୍ମିକ ଜଗତରେ ମଧ୍ୟ ସେମିତି ପ୍ରସିଦ୍ଧ ଥିଲେ । ସାହିତ୍ୟର ପୁରାତନ ଆଧ୍ୟାତ୍ମିକ ଧାରାକୁ ପୁଣି ଆଗକୁ ଆଣିବାରେ ସେ ଅଗ୍ରଣୀ ଭୂମିକା ନିର୍ବାହ କରିଛନ୍ତି । ମନୋଜ ଦାସ ସମାଜର ସ୍ଥୂଳ ରୂପ ଅପେକ୍ଷା ତା'ର ସୂକ୍ଷ୍ମ ସ୍ୱରୂପକୁ ତାଙ୍କର ଗଳ୍ପମାନଙ୍କରେ ବିଶେଷ ଭାବରେ ବିଶ୍ଳେଷଣ କରିଛନ୍ତି । ପରମ୍ପରା ଓ ଆଧୁନିକତାର ସେ ହେଉଛନ୍ତି ସୁ ସମନ୍ୱୟ ପ୍ରବହମାନ ।

ଭାରତୀୟ କାହାଣୀର ସେ ଚଳମାନ ଉତ୍ତରପିଢ଼ି ଯିଏ କହିବା ଆରମ୍ଭ କରେ ନିଦରୁ ଉଠି ପଡ଼େ ଚେତନା ଯେ ଲେଖିବା ଆରମ୍ଭ କରି ଉଛୁଳି ପଡ଼େ । ଭାବର ପରିସୀମା ଯାହାଙ୍କ ବକ୍ତବ୍ୟ ସମକାଳର ବେଦ, ଯାହାଙ୍କ ସାହିତ୍ୟ ସଭ୍ୟତାର ତୂର୍ଯ୍ୟନାଦ, ଜୀବନ, ସୃଜନ ଓ ଅଧ୍ୟୟନର ଅପୂର୍ବ ଉଚ୍ଛ୍ୱାସ ମନୋଜ ଦାସ ।

ଗଳ୍ପ ସଂକଳନ 'ଆରଣ୍ୟକ' ପାଇଁ ୧୯୬୫ରେ ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ମନୋଜ ଦାସଙ୍କ କଥା ଓ କାହାଣୀ ପାଇଁ ୧୯୭୨ରେ ସେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଏବଂ 'ଧୂମ୍ରାଭ ଦିଗନ୍ତ' ଓ ଅନ୍ୟାନ୍ୟ କାହାଣୀ ପାଇଁ ସେ ୧୯୮୧ରେ ଶାରଳା ପୁରସ୍କାର ଲାଭ କରିଛନ୍ତି । କଥା ସାହିତ୍ୟ ପାଇଁ ୧୯୯୫ରେ ମର୍ଯ୍ୟାଦାଜନକ 'ପ୍ରଥମ ସାହିତ୍ୟ ଭାରତୀ' ସମ୍ମାନରେ ସମ୍ମାନିତ । ଏହି ମହାନାୟକଙ୍କର ମହାପ୍ରୟାଣ ଘଟେ ୨୦୨୧ ମସିହା ଅପ୍ରେଲ ମାସ ୨୭ ତାରିଖରେ । ଅସ୍ତ ହୋଇଗଲେ ଓଡ଼ିଆ ସାହିତ୍ୟର ଅଦ୍ୱିତୀୟ ବ୍ୟକ୍ତିତ୍ୱ, କଥାକାର ଓ ବାଗ୍ମୀପୁରୁଷ ମନୋଜ ଦାସ ।

ଅଧ୍ୟାପିକା, ସ୍ନାତକୋତ୍ତର ଓଡ଼ିଆ ବିଭାଗ
କମଳା ନେହେରୁ ମହିଳା ମହାବିଦ୍ୟାଳୟ
ୟୁନିଟ୍-୧, ଭୁବନେଶ୍ୱର

# କେନ୍ଦ୍ରାପଡ଼ାର ସୂର୍ଯ୍ୟଘଡ଼ି

ନିକୁଞ୍ଜ ବିହାରୀ ସାହୁ

ପ୍ରାଚୀନ ସମୟରେ ସମୟ ଗଣନା ପାଇଁ ସୂର୍ଯ୍ୟଘଡି ହିଁ ଥିଲା ଏକମାତ୍ର ମାଧ୍ୟମ । ଏଥିରେ ଥିବା ଏକ ଦଣ୍ଡ ଗୋଟିଏ ଅଂଶାଙ୍କିତ ଫଳକ ଉପରେ ଛାୟାପାତ କରେ । ଏହି ଛାୟାର ଅବସ୍ଥାନରୁ ହିଁ ସ୍ଥାନୀୟ ସମୟର ସୂଚନା ମିଳିଥାଏ । ଫଳକର ସଜ୍ଜା ଅନୁସାରେ ସୂର୍ଯ୍ୟଘଡିକୁ ବିଶୁବ-ରୈଖୀୟ, ଭୂସମାନ୍ତରୀୟ ଏବଂ ଭୂଲମ୍ବୀୟ : ଏହିପରି ତିନି ଭାଗରେ ବିଭକ୍ତ କରାଯାଇଛି । କେନ୍ଦ୍ରାପଡା ସହରସ୍ଥ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟର ଅନତିଦୂରରେ ଏକ ଐତିହାସିକ ସୂର୍ଯ୍ୟଘଡି ଦେଖିବାକୁ ମିଳେ । ଏହା ଇଟା ଓ ସିମେଣ୍ଟରେ ତିଆରି ବ୍ରିଟିଶ ଅମଳର ଏକ ପ୍ରାଚୀନ କୀର୍ତ୍ତି । ଏହାର ଫଳକଟି ଭୂସମାନ୍ତର ଅବସ୍ଥାରେ ଥିବାରୁ ଏହା ଏକ ଭୂସମାନ୍ତରୀୟ ସୂର୍ଯ୍ୟଘଡି । ଏହାର ଫଳକ ଉପରେ ଛାୟାପାତ କରିବା ନିମନ୍ତେ ଘଡ଼ିରେ ଏକ ତ୍ରିଭୁଜାକୃତି ଦଣ୍ଡର ବ୍ୟବସ୍ଥା ଅଛି । ଫଳକର ଅଂଶାଙ୍କନ ଉପରେ ଏହି ଦଣ୍ଡ ଦ୍ୱାରା ପଡୁଥିବା ଛାୟାର ଅବସ୍ଥାନରୁ ସାଧାରଣତଃ ସମୟ ନିରୂପଣ କରାଯାଏ । ଏହି ଘଡ଼ିରେ ଏକ ବିଶାଳକାୟ ଗୋଲାକୃତି ଫଳକର ମଧ୍ୟଭାଗରେ ଗୋଟିଏ ତ୍ରିଭୁଜାକାର ଦଣ୍ଡ ସ୍ଥାନିତ ଅଛି । ଏହି ତ୍ରିଭୁଜାକୃତି ଦଣ୍ଡର ଭୂମିସ୍ଥ କୋଣ ସ୍ଥାନୀୟ ଅକ୍ଷାଂଶ (ପ୍ରାୟ ୨୧ ଡିଗ୍ରୀ) ସଙ୍ଗେ ସମାନ ଏବଂ ଦଣ୍ଡଟିକୁ ଉତ୍ତର ଆଡକୁ ଧ୍ରୁବତାରା ଦିଗରେ ମୁହଁ କରି ରଖା ଯାଇଛି । ଏଭଳି ଅବସ୍ଥାରେ, ତ୍ରିଭୁଜାକୃତି ଦଣ୍ଡର କର୍ଣ୍ଣରେଖା ପୃଥିବୀର ଅକ୍ଷ ସଙ୍ଗେ ସମାନ୍ତର ଅବସ୍ଥାରେ ରହିଥାଏ ଯାହା ନିର୍ଭୁଲ ରୂପେ ସମୟ ଗଣନାରେ ସହାୟକ ହୋଇଥାଏ । ଏଥିରେ ସ୍ଥାନିତ ଏକ ପ୍ରସ୍ତର ଫଳକର ଲିପି ଅନୁସାରେ, ଘଡିଟି ବ୍ରିଟିଶ ଅମଳରେ ଗତ ୧୮୮୭ ମସିହାରେ ମହାରାଣୀ ଭିକଟୋରିଆଙ୍କ ଶାସନର ୫୦ ବର୍ଷ ପୂର୍ତ୍ତି ଉପଲକ୍ଷେ ନିର୍ମାଣ କରାଯାଇଥିଲା । ସୁତରାଂ ଏହା ଏକ ଶତାବ୍ଦୀ ଊର୍ଦ୍ଧ୍ୱ କାଳର ପ୍ରାଚୀନ ଘଡି ବୋଲି ଧରିବାକୁ ହେବ । ମାତ୍ର ଏହି ଐତିହାସିକ ଘଡିଟି ଏବେ ରକ୍ଷଣାବେକ୍ଷଣ ଅଭାବରୁ ଅବହେଳିତ ଅବସ୍ଥାରେ ପଡ଼ିଛି । ଫଳକରେ ଅଂଶାଙ୍କନର ଦାଗସବୁ ଲିଭି ଯାଇଥିବାରୁ ପ୍ରକୃତ ସମୟ ଗଣନା ସମ୍ଭବ ହୋଇପାରୁ ନାହିଁ । ଆହୁରି ମଧ୍ୟ, ଏହା ନିକଟରେ ଅବସ୍ଥିତ ଏକ ସୁଉଚ୍ଚ ସରକାରୀ ଅଟ୍ଟାଳିକାର ଛାଇ ଏହି ସୂର୍ଯ୍ୟଘଡି ଉପରେ ପଡୁଥିବାରୁ ବର୍ଷର ସବୁ ସମୟରେ ସମୟ ଗଣନା କରିବା ସମ୍ଭବପର ହେଉ ନାହିଁ । ଲେଖକ ଏହି ଘଡିଟିକୁ ପ୍ରଥମେ ୧୯୯୬ ମସିହାରେ ଦେଖିଥିଲେ । ସେସମୟରେ ଏହି ଫଳକର କିଛି ଅଂଶ ଭାଙ୍ଗି ଯାଇଥିଲା । ଏହା ଚାରିପଟେ ଅରମା ଭରି ରହିଥିଲା । ଘଡିର ଅନତିଦୂରରେ ଥିବା କିଛି ଅଟ୍ଟାଳିକାର ଛାଇ ଘଡି ଉପରେ ପଡୁଥିବାରୁ ଏହା ସୁଚାରୁ ରୂପେ କାର୍ଯ୍ୟ

କରିପାରୁ ନାହିଁ । ଏକ ସୂର୍ଯ୍ୟଘଡି ସାଧାରଣତଃ 'ସ୍ଥାନୀୟ ସମୟ (Local Time)' ସୂଚନା ଦେଇଥାଏ । ଏହା ଆମ କଳଘଡିର ସମୟ ସହିତ ମେଳ ଖାଏ ନାହିଁ ଯେହେତୁ ଏକ କଳଘଡ଼ିରେ କେବଳ 'ଭାରତୀୟ ମାନକ ସମୟ (Indian Standard Time)' ପ୍ରଦର୍ଶିତ ହୋଇଥାଏ ଯାହା ଭାରତୀୟ ମାନକ ଦ୍ରାଘିମା ୮୨.୫ ର ସମୟ ଅନୁସାରେ ପର୍ଯ୍ୟବସିତ । ଭାରତୀୟ ମାନକ ଦ୍ରାଘିମା (୮୨.୫ ଡିଗ୍ରୀ ପୂର୍ବ) ଓ ଆମର ଦ୍ରାଘିମା (୮୬ ଡିଗ୍ରୀ ପୂର୍ବ) ମଧ୍ୟରେ ୩.୫ ଡିଗ୍ରୀର ଅନ୍ତର ରହିଛି ଏବଂ ପ୍ରତି ୧ ଡିଗ୍ରୀ ଦ୍ରାଘିମା ଅନ୍ତରରେ ୪ ମିନିଟ ସମୟର ଫରକ ଆସିଥାଏ । ସୁତରାଂ ଆମ ରାଜ୍ୟରେ କୌଣସି ସୂର୍ଯ୍ୟଘଡ଼ିର ସମୟକୁ ଏକ କଳଘଡିର ସମୟ ସଙ୍ଗେ ମିଳାଇବାକୁ ହେଲେ ଏହାର ପ୍ରଦର୍ଶିତ ପାଠ୍ୟାଙ୍କରୁ ୧୪ ମିନିଟ ସମୟ ବିୟୋଗ କରିବା ଆବଶ୍ୟକ । ଏହା ସତ୍ତ୍ୱେ ଏକ ସୂର୍ଯ୍ୟଘଡି ଓ କଳଘଡିର ସମୟ ମଧ୍ୟରେ ଅଳ୍ପ କିଛି ପାର୍ଥକ୍ୟ ରହିଥାଏ । ଏହି ପାର୍ଥକ୍ୟକୁ ଦୂର କରି କଳଘଡ଼ିର ସମୟ ସଙ୍ଗେ ସମ୍ପୂର୍ଣ୍ଣ ରୂପେ ମେଳନ କରିବାକୁ ହେଲେ ସୂର୍ଯ୍ୟଘଡିର ପ୍ରଦର୍ଶିତ ସମୟ ସଙ୍ଗେ ବର୍ଷର ମାସ ଓ ତାରିଖ ଅନୁସାରେ କିଛି ସମୟର ଯୋଗ କିମ୍ବା ବିୟୋଗ କରିବାର ଆବଶ୍ୟକତା ପଡିଥାଏ ଏଥିପାଇଁ ଏକ ସମୟ ସାରଣୀର ବ୍ୟବହାର କରିବାକୁ ପଡେ ଯାହାର ନାମ ସମୟ ସମୀକରଣ ସାରଣୀ (Equation of Time Table) । କେନ୍ଦ୍ରାପଡା ସୂର୍ଯ୍ୟଘଡିର ସୁରକ୍ଷା ନିମନ୍ତେ ଉତ୍ତମ ରକ୍ଷଣାବେକ୍ଷଣ ସାଙ୍ଗକୁ ଏହା ବର୍ଷର ସବୁ ସମୟରେ ସୂର୍ଯ୍ୟାଲୋକ ପାଇବାକୁ ହେଲେ ପନ୍ତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାଙ୍କ ପରାମର୍ଶ କ୍ରମେ ଏହାକୁ ନୂତନ ସ୍ଥାନକୁ ସ୍ଥାନାନ୍ତରିତ କରାଯିବା ଆବଶ୍ୟକ । ଏହାର ଫଳକ ଉପରେ ଲିଭିଯାଇଥିବା ଅଂଶାଙ୍କନକୁ ନୂତନ ରୂପେ ଅଙ୍କନ କରାଯିବା ଆବଶ୍ୟକ । ଘଡ଼ିରେ ପ୍ରଦର୍ଶିତ ସ୍ଥାନୀୟ ସମୟକୁ ଆମେ ଏବେ ବ୍ୟବହାର କରୁଥିବା କଳଘଡିର ସମୟ ସଙ୍ଗେ ମେଳନ କରିବା ନିମନ୍ତେ ଏକ ସମୟ ସମୀକରଣ ସାରଣୀ (Equation of Time Table) ସ୍ଥାନିତ ଗୋଟିଏ ସୂଚନା ଫଳକର ବ୍ୟବସ୍ଥା କରାଯିବା ଆବଶ୍ୟକ । ଆମ ରାଜ୍ୟର କେନ୍ଦ୍ରାପଡା ସମେତ କଟକର ରେଭେନ୍ସା କଲେଜ , ଭୁବନେଶ୍ୱରର ମୁକ୍ତେଶ୍ୱର ମନ୍ଦିର, କୋଣାର୍କର ସଂଗ୍ରହାଳୟ, ବଡମ୍ବାର ତହସିଲ କାର୍ଯ୍ୟାଳୟ ଓ ଖଣ୍ଡପଡାର କଚେରି ପରିସର ମଧ୍ୟରେ ବ୍ରିଟିଶ ଅମଳର ଐତିହାସିକ ସୂର୍ଯ୍ୟଘଡିମାନ ରହିଥିବାର ଦେଖିବାକୁ ମିଳେ । ସ୍ଥାନୀୟ ପ୍ରଶାସନ ତରଫରୁ ଏଗୁଡିକର ସଂରକ୍ଷଣ କରାଯିବା ନିହାତି ଆବଶ୍ୟକ ।

ଏଜୁକେଶନ ଅଫିସର
ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର , ଭୋପାଳ



# ଉମରକୋଟର ଲୋକଦେବୀ

ଡକ୍ଟର ପ୍ରମୋଦିନୀ ହୋତା

ଅବିଭକ୍ତ କୋରାପୁଟ ଜିଲ୍ଲାର ପର୍ବତମାଳା, ନଦନଦୀ, ସବୁଜ ବନାନୀ, ସରଳ ଆଦିବାସୀ ମଣିଷର ଜୀବନଚର୍ଯ୍ୟା ସବୁକିଛି ମନୋମୁଗ୍ଧକର । ନବରଙ୍ଗପୁର ଜିଲ୍ଲା ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ ହେବା ପରେ ଜିଲ୍ଲାର ପ୍ରକୃତିର ଚାରୁ ଚିତ୍ରଶାଳା, ଅନାକ୍ରାନ୍ତ ଇନ୍ଦ୍ରାବତୀ ନଦୀବନ୍ଧ, ପୋଡ଼ାଗଡ଼ର ପ୍ରାଚୀନ ଐତିହ୍ୟ, ମାଣ୍ଡା ଡଙ୍ଗରି ଭାସ୍କେଲ ନଦୀବନ୍ଧ, ଫୁଲ ଝରଣ, ବନ୍ଦନଦୋରା ଜଳପ୍ରପାତ, ଉମରକୋଟର ଲୋକଦେବୀ ପେଣ୍ଡ୍ରାଣୀ ପୀଠ ତା'ର ସ୍ୱତନ୍ତ୍ର ଗାଥା କହିଥାଏ ।

**କିମ୍ବଦନ୍ତୀ**

ଘଣ୍ଟଶାଳ ପିଆଶାଳ ଘେରା ପେଣ୍ଡ୍ରାହାଣ୍ଡି ଗୋଟିଏ ଛୋଟ ଗ୍ରାମ ଥିଲା । ଦେବୀ ଜଗଦଳପୁର, ଗଡ଼ ଦେବୀ ଦନ୍ତେଶ୍ୱରୀଙ୍କ ସାନ ଭଉଣୀ ରୂପରେ ପୂଜା ପାଉଥିଲେ । ପେଣ୍ଡ୍ରାହାଣ୍ଡୀର ଦେବୀ ଥିଲେ ଲୋକଦେବୀ । ପେଣ୍ଡ୍ରାହାଣ୍ଡି ଆଜିର ଛତିଶଗଡ଼ ରାଜ୍ୟରେ ରହିଛି । ଛତିଶଗଡ଼ର ପେଣ୍ଡ୍ରାହାଣ୍ଡି ଗ୍ରାମରେ ଅନେକ ଗଣ୍ଡ ଜନଜାତି ବାସ କରୁଥିଲେ । ଏହି ଅଞ୍ଚଳ ନବରଙ୍ଗପୁର ଜିଲ୍ଲାରୁ ପଶ୍ଚିମକୁ ୬୩ କି.ମି. ଦୂରରେ ଅବସ୍ଥିତ ଉମରକୋଟ ତା'ପରେ ରାଇଘର, ନିକଟବର୍ତ୍ତୀ ଅଞ୍ଚଳର କିଛି ଦୂରରେ ଛତିଶଗଡ଼ । ପେଣ୍ଡ୍ରାଣୀ ଦେବୀଙ୍କ ଜନ୍ମ ବୃତ୍ତାନ୍ତ ବିଷୟରେ ଅନେକ ଲୋକକଥା କାହାଣୀ ଶୁଣାଯାଏ । ପେଣ୍ଡ୍ରାହାଣ୍ଡି ଗ୍ରାମର ମୁରବୀ ଥିଲା ବୁରୁସୁ ଗଣ୍ଡ । ବୁରୁସୁ ଗଣ୍ଡର ସାତପୁଅ ଗୋଟିଏ ଝିଅ । ଝିଅ ଗୁରେଇର ବିବାହ କରି ଗଣ୍ଡ ଯୁବକକୁ ବୁରୁସୁ ଗଣ୍ଡ ଘର ଜ୍ୱାଇଁ କରିଆଣିଲା । ଗଣ୍ଡ ଜନଜାତିର ନିୟମ ରହିଛି ଶ୍ୱଶୁରର ମନ ଯଦି ପାଇଥିବ ଜ୍ୱାଇଁ ଯଦି ବିଲକାମ, ଗାଈଗୋରୁ କାର୍ଯ୍ୟ କରି ଭଲ ଚାଷ କରିପାରିବ ତେବେ ସେ ଝିଅକୁ ବିବାହ କରିପାରିବ । ଜ୍ୱାଇଁ ମଙ୍ଗତୁ ଏକ ବର୍ଷ ଶ୍ୱଶୁର ଘରେ କାମ କରିବା ପରେ ଗାଁରେ ଫସଲ ଭଲ ହେଲାନାହିଁ । ଗାଁରେ କାଳିସୀ (ଶିର୍ହା) ବସାଗଲା, କାଳିସୀ କହିଲା ମଣିଷ ବଳି ଦିଆଯିବ । ସେହି ରକ୍ତରେ ଧରନୀ ମାତା ସନ୍ତୋଷ ହେବ ଏବଂ ଭଲ ଫସଲ ହେବ । ଗୁରେଇର ଭାଇମାନେ ଭାବିଲେ ଗୁରେଇକୁ ନ ଜଣାଇ ମଙ୍ଗତୁକୁ ମାରିଦେବା । ତା'ର ରକ୍ତରେ ମାଟି ମାଁ ସନ୍ତୁଷ୍ଟ ହେବ । ମଙ୍ଗତୁକୁ ମାରିଦେଲେ ତା'ର ରକ୍ତ ଜମିରେ ପକାଇ ଘରକୁ ଚାଲିଆସିଲେ । ମଙ୍ଗତୁ ଘରକୁ ଫେରିବା ନ ଦେଖି ଗୁରେଇ ମଙ୍ଗତୁକୁ ଖୋଜିବା ପାଇଁ ବାହାରିଲା । ଜଙ୍ଗଲରେ ସାରାରାତି ଖୋଜିବା ପରେ ଗୁରେଇ ଜମି ନିକଟରେ ଦେଖିଲା କୁକୁର ମାଟି ଖୋଳୁଛି । ସେ ଜମିରେ ମଙ୍ଗତୁର ହାତ ଦେଖି କାନ୍ଦିଲା । କୁକୁର ମଧ୍ୟ କାନ୍ଦିବାକୁ ଲାଗିଲା । କୁକୁର ନଈ ହୋଇ ବହିଗଲା । ସେହି ନଦୀର ନାମ ''କୁକୁରଲି'' ରଖାଗଲା । ପରଦିନ ଲୋକେ ଦେଖିଲେ ପେଣ୍ଡ୍ରା ଗଛରେ ଝୁଲି ଗୁରେଇ ଆତ୍ମହତ୍ୟା କରିଥିଲା । ସେହିଦିନଠାରୁ ପେଣ୍ଡ୍ରାହାଣ୍ଡିର ଗଣ୍ଡ ସମାଜ ଗୁରେଇର ଆତ୍ମହତ୍ୟା ଓ ମଙ୍ଗତୁ ପାଇଁ ତା'ର ପ୍ରାଣ ବିଜର୍ସନ କାର୍ଯ୍ୟକୁ ଅଲୌକିକ ମନେ କଲେ । ପରଦିନ ପେଣ୍ଡ୍ରାହାଣ୍ଡି ଗ୍ରାମର ଲୋକମାନେ ଦେଖିଲେ ଗୁରେଇ ଆତ୍ମହତ୍ୟା କରିଥିବା ପେଣ୍ଡ୍ରା ଗଛ ମୂଳରେ ଜଣେ ଏଗାର ବର୍ଷର ଝିଅ ନାଲି ପାଟଶାଢ଼ୀ ପିନ୍ଧି କାନ୍ଦି କାନ୍ଦି ମଙ୍ଗତୁ ପୋତା ଯାଇଥିବା ଜମିକୁ ଦେଖାଇ କିଛି କହିବାକୁ ଚାହୁଁଥିଲା । ଗଛ ନିକଟକୁ ଯାଇ ଲୋକମାନେ ଦେଖିଲେ ଯେ ଗଛ ତଳେ ଗୋଟିଏ ପଥର ରହିଛି ଏବଂ ସେହି ଝିଅଟି ଉଭା ହୋଇଯାଇଛି ।

ଲୋକମାନେ ବିସ୍ମିତ ହୋଇ ଗ୍ରାମରେ ଶିର୍‌ହା (କାଳିସୀ) ବସାଇଲେ । କାଳିସୀ ନିର୍ଦ୍ଦେଶ କ୍ରମେ ନିଶାଣ, ମହୁରୀ, ଶିଙ୍ଗାର, ଟାମକ ବଜାଇ ସେହି ପଥରକୁ ଆଣି ପୂଜା କଲେ ଏବଂ ମାନବୀ ଗୁରେଇକୁ ପେଣ୍ଡ୍ରାଣୀ ଦେବୀ ନାମରେ ପୂଜା କଲେ ।

### ଅଲୌକିକ ଜନଶ୍ରୁତି ଏବଂ ମନ୍ଦିର ନିର୍ମାଣ

ନବରଙ୍ଗପୁର ରାଜା ଚୈତନ୍ୟ ଦେବଙ୍କ ଦ୍ୱାରା ମନୋନୀତ ଅମିନ ମଙ୍ଗରାଜ ପଟ୍ଟନାୟକକୁ ଜଣାଇଲେ । ଅମିନ ପ୍ରତି ଦେବୀ କୋପ କରିବାରୁ ଅମିନ କାଙ୍ଗାଳ ହୋଇଗଲା । ଦେବୀ ମନସ୍ଥ କଲେ ଯେ, ସେ ଭରଣ୍ଡି ଗ୍ରାମରେ ରହିବେ । ତା'ପରେ ଦେବୀ ଶିର୍‌ହା ଦେହରେ ପ୍ରବେଶ କରି କହିଲେ ଦେବୀ ଉମରକୋଟରେ ରହିବେ । ଲୋକମାନେ ପେଣ୍ଡ୍ରାହାଣ୍ଡି ଗ୍ରାମ ଛାଡ଼ି ଦେବୀଙ୍କ ପ୍ରସ୍ତର ପ୍ରତୀକକୁ ନିଜ କାନ୍ଧରେ ବୋହି ଉମରକୋଟକୁ ନେଇ ଆସିଲେ । ରାଜ ଚୈତନ୍ୟ ଦେବଙ୍କର ଗୋଟିଏ ବଳିଷ୍ଠ ସୁନ୍ଦର ଧଳାରଙ୍ଗର ଘୋଡ଼ା ଥିଲା । ଦିନେ ରାଜାଙ୍କ ଧଳା ରଙ୍ଗର ଘୋଡ଼ା ଅଦୃଶ୍ୟ ହୋଇଗଲା । ଚାରିଆଡ଼େ ଖୋଜାଖୋଜି କରିବା ପରେ ଘୋଡ଼ା ମିଳିଲା ନାହିଁ । ରାଜାଙ୍କ ପାରିଷଦବର୍ଗଙ୍କ ପରାମର୍ଶ ଅନୁସାରେ ବଣ୍ଡାଶିରାକୁ ବସାଗଲା । ଦେବୀ ପେଣ୍ଡ୍ରାଣୀ ଉଭାହୋଇ ଘୋଡ଼ା ବିଷୟରେ କହିଲେ, ଘୋଡ଼ା ମିଳିଯିବା ପରେ ରାଜା ଦେବୀ କୃପା ମନେକରି ଘୋଡ଼ା ଚରୁଥିବା ସ୍ଥାନରେ ଦେବୀଙ୍କ ନିମନ୍ତେ ଏକ ସୁନ୍ଦର ମନ୍ଦିର ନିର୍ମାଣ କରାଇ ଭରଣ୍ଡୀ ଗ୍ରାମରୁ ଦେବୀଙ୍କ ପ୍ରସ୍ତର ପ୍ରତୀକ ଆଣି ଭକ୍ତି ଓ ସମ୍ମାନ ସହ ମନ୍ଦିର ପ୍ରତିଷ୍ଠା କରାଇ ଦେବୀଙ୍କ ପୂଜାର୍ଚ୍ଚନା ସକାଶେ ଜମିବାଡ଼ି ଖଞ୍ଜିଦେଲେ ।

### ଦେବୀଙ୍କ ପୂଜାର୍ଚ୍ଚନା

ପୂଜାରୀ ବଂଶର ବଂଶଧର ପ୍ରତି ରବିବାର ଦିନ ପେଣ୍ଡ୍ରାଣୀ ଦେବୀଙ୍କୁ ପୂଜାର୍ଚ୍ଚନା କରିଥାନ୍ତି । ସେହିଦିନ ଦେବୀଙ୍କୁ ଦର୍ଶନ କରାଯାଏ । ମାନସିକ କରି ଜାତି ଧର୍ମ ନିର୍ବିଶେଷରେ ମନ୍ଦିରରେ ପ୍ରବେଶ କରିଥାଏ ଭକ୍ତ । ଦେବୀଙ୍କୁ ଶୁଷ୍କ ଭୋଗ ଯଥା : ନଡ଼ିଆ, ଫଳମୂଳ, କଦଳୀ, ଖଇ, ଫୁଲ ଆଦି ପ୍ରଦାନ କରାଯାଏ । ଲୋକଦେବୀ ରୂପରେ ମା' ପେଣ୍ଡ୍ରାଣୀଙ୍କୁ ପୂଜା କରାଯାଏ ।

### ପର୍ବପର୍ବାଣି

ଆଷାଢ଼ ମାସରେ ଲୋକଦେବୀ ପେଣ୍ଡ୍ରାଣୀଙ୍କ ସହିତ ଶ୍ରୀ ବଳଭଦ୍ର, ମା' ସୁଭଦ୍ରା, ଶ୍ରୀଜଗନ୍ନାଥ ରୂପରେ ପୂଜା କରାଯାଇ ରଥାରୂଢ଼ା କରାଯାଏ । ସେଠାରୁ ଗୁଣ୍ଡିଚା ମନ୍ଦିର ଅଣାଯାଏ । ନବଦିନ ପୂଜା କରିବା ପରେ ବାହୁଡ଼ା ଯାତ୍ରାରେ ମନ୍ଦିରକୁ ଅଣାଯାଏ । ଦିସାରୀଙ୍କ ନିର୍ଦ୍ଦେଶ କ୍ରମେ ବାରଖଣ୍ଡ ଗ୍ରାମର ବିଭିନ୍ନ ଦେବଦେବୀ, ଦେବୀଙ୍କ ଲାଠି, ପୂଜକ, ଦିସାରୀ ଶିରାଙ୍କ ସହିତ ଅଣାଯାଏ ଏବଂ ଦେବୀଙ୍କୁ ବାଜା – ବାଜଣା ସହିତ ସଙ୍ଖୋଳା ଯାଇ ସେଠାରେ ଯାତ୍ରା ହୋଇଥାଏ ।

ଆଶ୍ୱିନ ମାସରେ ଦଶହରା ପର୍ବରେ ପେଣ୍ଡ୍ରାଣୀଙ୍କ ଲାଠି ଜୟପୁର ଆସି ଭଗବତୀ ମନ୍ଦିରରେ ପହଞ୍ଚିଲା ପରେ ଭଗବତୀଙ୍କ ନବଦିନ ପୂଜା ଆରମ୍ଭ ହୁଏ । ସମସ୍ତ ଲାଠି ଏକାଠି ହୋଇ ଦଶହରା ପଡ଼ିଆକୁ ଯାଇ ସେଠାରେ ପୂଜାର୍ଚ୍ଚନା ପରେ ନିଜ ପୀଠକୁ ଦେବୀ ପ୍ରତ୍ୟାବର୍ତ୍ତନ କରିଥାନ୍ତି ।

ଫାଲ୍‌ଗୁନ ମାସରେ ଦେବୀ ଉମରକୋଟର ଦୋଳ ମଣ୍ଡପରେ ବିଜେ କରି ପୂଜା ପାଇଥାନ୍ତି ଏବଂ ଚାଚେରୀ ଭୋଗ ଖାଇଥାନ୍ତି ।

ଚୈତ୍ର ପୂର୍ଣ୍ଣିମାଠାରୁ ନଅଦିନ ଯାଏଁ ଦେବୀଙ୍କ ଚଳନ୍ତି ପ୍ରତିମା ବିମାନରେ ଆସି ମଙ୍ଗଳା ମା'ଙ୍କ ସହିତ ନଗର ପରିକ୍ରମା କରିଥାନ୍ତି । ପ୍ରତ୍ୟେକଙ୍କ ଘରୁ ଭୋଗ ଖାଇଥାନ୍ତି । ଏହାକୁ କଳସୀ ଯାତ୍ରା କୁହାଯାଏ । ସାତଜଣ କୁମାରୀ କନ୍ୟା ନୂଆ ଲୁଗା ପିନ୍ଧି ସାତଗୋଟି କଳସୀରେ ପବିତ୍ର ପାଣିଧରି ଦିନସାରା ଉପବାସ ରହି ନିଷ୍ଠା ସହକାରେ ଘରକୁ ଘରକୁ ଯାଇ ପୂଜା ପାଇଥାନ୍ତି । ହଳଦୀ ଜଳରେ ପ୍ରତ୍ୟେକ କନ୍ୟାର ଗୋଡ଼କୁ ଲୋକମାନେ ଧୋଇ ପଣାପାଣି ଦେଇଥାନ୍ତି ଭୋଗରାଗ କରିଥାନ୍ତି । ଆଲଟ, ଚାମର, ମର୍ଦ୍ଦଳ, ଛତ୍ର ଧରି ମନ୍ଦିର କମିଟିର ସଦସ୍ୟଗଣ ଏବଂ ପୂଜାରୀ ଦେବୀଙ୍କ ସହିତ ଯାଇଥାନ୍ତି ।

ଦେବୀଙ୍କ ଅଲୌକିକ ମହିମା ସର୍ବଜନବିଦିତ । ଦେବୀଙ୍କ କୃପାରୁ ବସ୍ତର, ନବରଙ୍ଗପୁର ଓ ଅନ୍ୟାନ୍ୟ ଅଞ୍ଚଳର ଲୋକମାନେ ସୁଖ ଶାନ୍ତି ଓ ପ୍ରାଚୁର୍ଯ୍ୟରେ ରହିଥାନ୍ତି ବୋଲି ବିଶ୍ୱାସ ରହିଛି । ଆଜି ମଧ୍ୟ ଦେବୀ ସମସ୍ତଙ୍କର ଆରାଧ୍ୟ ଦେବତା । ଦେବୀଙ୍କ କୃପାରୁ ଜନଜାତି ଓ ଆର୍ଯ୍ୟଜାତି (ଅଣ ଆଦିବାସୀ) ସମସ୍ତେ ସୁଖରେ ଅଛନ୍ତି ବୋଲି ବିଶ୍ୱାସ ରହିଛି ।

ପାଇଲ ସାହି, ଜୟପୁର, କୋରାପୁଟ

# ଉତ୍କଳର କବିରତ୍ନ ସରସ୍ୱତୀ ଦାମୋଦର ମିଶ୍ର

ଡକ୍ଟର କୃତ୍ତିବାସ ନାୟକ

ବିଂଶ ଶତାବ୍ଦୀର ଯେଉଁ କେତେକ ସାରସ୍ୱତ ସାଧକ ଓଡ଼ିଶା ମାଟିରେ ଜନ୍ମ ଲାଭ କରି ଓଡ଼ିଆ ତଥା ସଂସ୍କୃତ ସାହିତ୍ୟକୁ ସମୃଦ୍ଧ କରିଛନ୍ତି–ସେମାନଙ୍କ ମଧ୍ୟରୁ କବିରତ୍ନ ସରସ୍ୱତୀ ଦାମୋଦର ମିଶ୍ର ହେଉଛନ୍ତି ଅନ୍ୟତମ । ବାରାଣସୀଠାରେ ଆୟୋଜିତ ସର୍ବଭାରତୀୟ ପଣ୍ଡିତ ମହାସଭାଦ୍ୱାରା ପ୍ରଦାନ କରାଯାଉଥିବା ସେତେବେଳର ଶ୍ରେଷ୍ଠ 'ସରସ୍ୱତୀ ସାହିତ୍ୟ ସମ୍ମାନ' ଲାଭ କରିବାରେ ସେ ହେଉଛନ୍ତି– ପ୍ରଥମ ଓଡ଼ିଆ ପଣ୍ଡିତ ଓ କବି । ସେ ଏକସଙ୍ଗେ ସଂସ୍କୃତ ଓ ଓଡ଼ିଆ ଭାଷାରେ ପାଣ୍ଡିତ୍ୟ ଲାଭକରି ପ୍ରାୟ ୧୦୫ ଖଣ୍ଡ ପୁସ୍ତକ ରଚନା କରିଥିଲେ । କିନ୍ତୁ ତାଙ୍କର ପ୍ରକାଶିତ 'କନିକା ବିଜୟ' ପୁସ୍ତକ ମଲାଟରେ ୭୬ ଖଣ୍ଡ ପୁସ୍ତକର ତାଲିକା ରହିଛି । ସେଥିମଧ୍ୟରୁ ମାତ୍ର ୩୧ ଖଣ୍ଡ ପୁସ୍ତକ ଓଡ଼ିଶା ତଥା ଓଡ଼ିଶା ବାହାରେ ବିଭିନ୍ନ ପ୍ରକାଶକଙ୍କଦ୍ୱାରା ପ୍ରକାଶିତ ହୋଇପାରିଛି । କବିଙ୍କର ଜୀବଦ୍ଦଶାରେ ଚବିଶ ଖଣ୍ଡ ଓ ତାଙ୍କ ଦେହାନ୍ତ ପରେ ତାଙ୍କ ପୁତ୍ର କବି ପୀତାମ୍ବର ମିଶ୍ରଙ୍କ ପ୍ରଚେଷ୍ଟାରେ ସାତଖଣ୍ଡ ପୁସ୍ତକ ପ୍ରକାଶିତ ହୋଇଛି । ତାଙ୍କର ଅନେକଗୁଡ଼ିଏ ପାଣ୍ଡୁଲିପି ଆଜିଯାଏ ଅପ୍ରକାଶିତ ହୋଇରହିଛି ।

ତାଙ୍କର ପୁସ୍ତକକୁ ପାଠକରି କବିବର ରାଧାନାଥ ରାୟ ଲେଖିଛନ୍ତି–ଓଡ଼ିଶାରେ ଏଭଳି ଏକ ପାଣ୍ଡିତ୍ୟଭରା ସଜ୍ଜନ ମିଳିବା ବିରଳ ବ୍ୟାପାର କହିଲେ–ଅତ୍ୟୁକ୍ତି ହେବନାହିଁ । ତାଙ୍କ ଛନ୍ଦୋବଦ୍ଧ କାବ୍ୟ ରଚନା ଉଚ୍ଚ ପ୍ରଶଂସାଯୋଗ୍ୟ ଓ ସଂସ୍କୃତ ଭାଷାରେ ତାଙ୍କର ରହିଥିବା ଅଗାଧ ଜ୍ଞାନ ଖୁବ୍ କ୍ୱଚିତ ପଣ୍ଡିତଙ୍କ ମଧ୍ୟରେ ଦେଖିବାକୁ ମିଳେ ।

ସେହିପରି ଭକ୍ତକବି ମଧୁସୂଦନ ରାଓ ଲେଖିଛନ୍ତି– ସାଂପ୍ରତିକ କାଳରେ ଜଣେ ସାଧାରଣ କାବ୍ୟତୀର୍ଥ ପଣ୍ଡିତ ହୋଇଥିଲେ ହେଁ ସରସ୍ୱତୀ ଦାମୋଦର ସଂସ୍କୃତ ଭାଷାରେ ଶ୍ଳୋକ ରଚନା କରି ସେ ଜଣେ ଶବ୍ଦ ବିନ୍ଧାଣି ଓ ଶବ୍ଦ ଜାଦୁକରର ପ୍ରମାଣ ଦେଇପାରିଛନ୍ତି । ଏହା ତାଙ୍କର ପୁସ୍ତକାବଳୀ ପାଠ ପୂର୍ବରୁ ଆଦୌ ବିଶ୍ୱାସକରି ହେଉନାହିଁ ।

ତାଙ୍କ ପାଣ୍ଡିତ୍ୟରେ ମୁଗ୍ଧହୋଇ ସାମନ୍ତ ଚନ୍ଦ୍ରଶେଖର ମହାପାତ୍ର ତାଙ୍କର ଭୂୟସୀ ପ୍ରଶଂସା କରିଥିଲେ । ପଣ୍ଡିତ ଗୋପବନ୍ଧୁ ଦାଶ ତାଙ୍କ ପାଣ୍ଡିତ୍ୟରେ ଆକର୍ଷିତ ହୋଇ ଏକଦା ତାଙ୍କର ଅତିଥି ହୋଇ କହିଥିଲେ–ଏକ ଅଗ୍ରଗାମୀ ସଂସ୍କୃତ ଟୋଲ୍‌ର ହେଡ଼ ପଣ୍ଡିତ ଭାବେ ଆସୀନ ହେବାପରେ ସେ ଏକମାତ୍ର ଉଚ୍ଚ ଯୋଗ୍ୟତା ସମ୍ପନ୍ନ ଅଧିକାରୀ, ଏହାର ଚାକ୍ଷୁଷ ପ୍ରମାଣ ଦେଇପାରିଛନ୍ତି । ବିନମ୍ର ସାଧୁ, ସରଳ ସ୍ୱଭାବର ଏହି ଭୂୟସୀ ଜ୍ଞାନ ସମ୍ପନ୍ନ ପଣ୍ଡିତ ପ୍ରବରଙ୍କ ଯୋଗ୍ୟତା ଯେ ଅଚିରେ ସ୍ୱୀକୃତ ଓ ସମ୍ମାନିତ ହୋଇଛି । ଏହା ମୋତେ ପୁଲକିତ ଓ ଆହ୍ଲାଦିତ କରିଛି । ଓଡ଼ିଶାରେ ସଂସ୍କୃତ ଭାଷା ଶିକ୍ଷାଦାନ ଓ ପ୍ରଚାର କ୍ଷେତ୍ରରେ ପଣ୍ଡିତ ମହାଶୟ ଏକ ସୁଖ ଓ ସୌଭାଗ୍ୟର ବିଷୟ ହୋଇଛି ।

ନିଜର ଅଧ୍ୟବସାୟ ଓ ପ୍ରଜ୍ଞାବଳରେ ସେ କାବ୍ୟ, ବ୍ୟାକରଣ, ପୁରାଣ, ସ୍ମୃତିତୀର୍ଥ ଉପାଧିରେ ଭୂଷିତ ହେବା ସହିତ ଭାରତ-ଭାରତୀ କଣ୍ଠରେ ନାନାବର୍ଣ୍ଣ, ନାନାରସ, ନାନାରୂପ, ନାନାଗନ୍ଧରେ ସୁଗନ୍ଧିତ ଶତାଧିକ ସାହିତ୍ୟ କୁସୁମର ହାର ପିନ୍ଧାଇ ଦେଇଥିଲେ । ତେଣୁ ତାଙ୍କୁ ୧୮୯୮ ମସିହାରେ କାବ୍ୟତୀର୍ଥ, ୧୮୯୯ ମସିହାରେ ଉପନିଷଦ ସମ୍ମାନ, ୧୯୦୨ ମସିହାରେ ପୁରାଣତୀର୍ଥ ସମ୍ମାନ, ୧୯୦୫ ମସିହାରେ ଯଜୁର୍ବେଦ ସମ୍ମାନ । ୧୯୧୦ ମସିହାରେ ସ୍ମୃତିତୀର୍ଥ ସମ୍ମାନ ୧୯୧୨ ମସିହାରେ ବ୍ୟାକରଣ ତୀର୍ଥ, ୧୯୧୫ ମସିହାରେ ତାଙ୍କୁ 'ସରସ୍ୱତୀ' ଉପାଧି ସହ କର୍ଣ୍ଣକୁଣ୍ଡଳ ଏବଂ କନକ କୁଣ୍ଡଳ ଉପାଧି ଓ ୧୯୪୫ ମସିହାରେ ଆଯୋଧ୍ୟାରେ ତାଙ୍କୁ 'କବିରତ୍ନ ଉପାଧି' ଭଳି ସମ୍ମାନରେ ସମ୍ମାନିତ କରାଯାଇଥିଲା ।

ଏହିଭଳି ଜଣେ ପ୍ରାଜ୍ଞପୁରୁଷ ଆମ ଓଡ଼ିଶା ମାଟିରେ ଜନ୍ମହୋଇ ଭାରତୀୟ ସାହିତ୍ୟ ଭଣ୍ଡାରକୁ ଏଭଳି ସମୃଦ୍ଧ କରିପାରିଥିଲେ, ଏକଥା ସହଜରେ ବିଶ୍ୱାସ ହୁଏନାହିଁ ।

ତତ୍କାଳୀନ ଅବିଭକ୍ତ କଟକ ଜିଲ୍ଲାର କନିକା କିଲ୍ଲା ଅଧୀନସ୍ଥ ନିପଟ ମଫସଲ ଗିରିୟା ଶାସନ ଗ୍ରାମ ଏକ ଗରିବ ବ୍ରାହ୍ମଣ ପରିବାରରେ ୧୮୭୨ ମସିହାରେ ରାମନବମୀ ଦିନ ଦାମୋଦର ମିଶ୍ର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଜନ୍ମର ଛଅ ମାସ ପରେ ପିତା ନାରାୟଣ ମିଶ୍ର ମାତ୍ର ବାଇଶ ବର୍ଷ ବୟସରେ ଆରପାରିକୁ ଚାଲିଗଲେ । ମାତା ଦୁର୍ଗାଦେବୀ ଅତ୍ୟନ୍ତ ଦୁଃଖ ଦାରିଦ୍ରତା ଭିତରେ ଶିଶୁ ଦାମୋଦରକୁ କେବଳ ବଞ୍ଚାଇ ରଖିଥିଲେ । ଶିକ୍ଷା ଗ୍ରହଣ କରିବାର କୌଣସି ସୁବିଧା ବା ସୁଯୋଗ ନଥିଲା । ଯୁବାବୟସରେ ସେ ମୌଳିକ ଶିକ୍ଷା ଉଦ୍ଦେଶ୍ୟରେ କେରଡ଼ାଗଡ଼ରେ ଥିବା ମାମୁଘରକୁ ଯାଇଥିଲେ । ସେଥିରେ ଅସଫଳ ହୋଇ ସେ ଘରକୁ ଫେରିବା ବାଟରେ ଜଣେ ବାଟୋଇ ତାଙ୍କୁ ଉପହାସ କରି କହିଦେଲେ 'ବୁଝିଲୁ ଦାମ! ତୁମ ଘରୁ ପଣ୍ଡିତ ଶବ୍ଦ ଉଠିଗଲା ଜାଣ । କଥାରେ ଅଛି- 'ବଂଶ ବୁଡ଼ିଲାବେଳେ, ଘରେ ଘୋଡ଼ାମୁହାଁ ପୁଅ ଜନ୍ମ ହୁଅନ୍ତି । ତୋର ତ ଶିକ୍ଷାଦୀକ୍ଷା ହେଲାନାହିଁ । ତୁ ହିଁ କୁଳରେ କଳଙ୍କ ଲଗାଇଦେଲୁ' ।

ଏହି କଥା ଦୁଇପଦ ଯୁବକ ଦାମୋଦରଙ୍କ ହୃଦୟରେ ତୀର ବିନ୍ଧିଦେଲା । ହାତରେ ଧନ ନଥାଇ ମଧ୍ୟ ସେ ସେଇଠି କଠୋର ଶପଥ ନେଲେ, ଯେମିତି ହେଲେ, ସେ ଶିକ୍ଷା ଗ୍ରହଣକରି ଜଣେ ପଣ୍ଡିତ ହେବେ । ତାଙ୍କ ଘରଠାରୁ ଛଅ କିଲୋମିଟର ଦୂର ତେନ୍ତୁଳିକୋଳି ଗ୍ରାମରେ ରହୁଥିବା ପଣ୍ଡିତ କୃତ୍ତିବାସ ଦାସଙ୍କ ଘରେ ସେ ଶରଣ ନେଲେ । ଗ୍ରାମବାସୀଙ୍କ ଉପହାସକୁ ଖାତିରି ନ କରି ସେ ନିଷ୍ଠାର ସହିତ ଶିକ୍ଷାରମ୍ଭ କରି ପାଠରେ ମନଦେଲେ । ଦୁଃଖ-କଷ୍ଟ ଓ ଅଭାବକୁ ଭୁଲି ସେ ଖୁବ୍‌କମ୍ ଦିନ ମଧ୍ୟରେ ସଂସ୍କୃତ ବ୍ୟାକରଣର ଶବ୍ଦରୂପ, ଧାତୁରୁପ ଇତ୍ୟାଦିର ମୌଳିକ ସୂତ୍ରକୁ ଆୟତ୍ତ କରିନେଲେ । ତାପରେ କେତେକ ଶୁଭେଚ୍ଛୁଙ୍କ ପରାମର୍ଶରେ ସେ କେନ୍ଦ୍ରାପଡ଼ାର ବଳଦେବଜୀଉ ସଂସ୍କୃତ ଟୋଲରେ ରହି ବ୍ୟାକରଣ ସୂତ୍ର ଅଧ୍ୟୟନ କଲେ ।

ସେହି ସମୟରେ ରାଜକନିକାଠାରେ ରାଜା ପଦ୍ମନାଭ ଭଞ୍ଜଙ୍କ ନାମରେ ନାମିତ ସଂସ୍କୃତ ଟୋଲ ଖୋଲିଥିଲା । ଗରିବ, ମେଧାବୀ, ବ୍ରାହ୍ମଣ ପିଲାଙ୍କ ପାଇଁ ସେହି ଟୋଲରେ ବୃତ୍ତି ପ୍ରଦାନର ବ୍ୟବସ୍ଥା ଥିଲା । ତେଣୁ ବୃତ୍ତିପାଇ ଦାମୋଦର ସେଇଠି ଅଧ୍ୟୟନ କଲେ । ସେଇଠି ତାଙ୍କର ପାଣ୍ଡିତ୍ୟ ଓ ପ୍ରତିଭାର ବିକାଶ ହୋଇଥିଲା । ତାପରେ ସେ କଲିକତା ବିଶ୍ୱବିଦ୍ୟାଳୟ ଅଧୀନରେ ଅନୁଷ୍ଟୁପ ଛନ୍ଦ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ତେଣୁ ତାଙ୍କୁ ପୁରୀର ସଦାଶିବ ସଂସ୍କୃତ ଟୋଲ୍‌ରେ ଆଚାର୍ଯ୍ୟ ପଦ ପାଇଁ ନିଯୁକ୍ତି ପତ୍ର ମିଳିଲା । କିନ୍ତୁ ତାକୁ ସେ ଗ୍ରହଣ ନ କରି ୧୯୦୬ ମସିହାରେ କନିକା ରାଜାଙ୍କର ରାଜପଣ୍ଡିତ ଓ ରାଜାପଦ୍ମନାଭ ଭଞ୍ଜ ସଂସ୍କୃତ ଟୋଲ୍‌ରେ ଆଚାର୍ଯ୍ୟ ପଦରେ ଯୋଗଦାନ କଲେ ।

ନିଜର କର୍ତ୍ତବ୍ୟନିଷ୍ଠା, ସମୟାନୁବର୍ତ୍ତିତା ଓ ଛାତ୍ର ବତ୍ସଳତା ଗୁଣ, ତାଙ୍କୁ ଉଜ୍ଜ୍ୱଳ ଭବିଷ୍ୟତ ଆଡ଼କୁ ଅଗ୍ରସର କରାଇନେଲା । ୧୯୧୦ ମସିହାରେ ସେ ସେହି ସଂସ୍କୃତ ଟୋଲ୍‌ର ପ୍ରଧାନ ପଣ୍ଡିତ ଦାୟିତ୍ୱ ଗ୍ରହଣ କଲେ । ପୁନଶ୍ଚ ସେ ୧୯୧୬ ମସିହାରେ କନିକା କିଲ୍ଲାର ପ୍ରଧାନ ଧର୍ମାଧକ୍ଷ ତଥା ରାଜାଙ୍କର ପ୍ରଧାନ ରାଜ ପୁରୋହିତ ଓ ଉପଦେଷ୍ଟା ପଦବୀରେ ରହିଲେ ।

ପଣ୍ଡିତ ଦାମୋଦରଙ୍କର ବୃତ୍ତିଥିଲା–ରାଜପଣ୍ଡିତ । କିନ୍ତୁ ପ୍ରବୃତ୍ତି ଥିଲା ରାଜକବି । ବାଣୀ ଆରାଧନାରେ ଥିଲା–ତାଙ୍କର ବିଶେଷ ରୁଚି । ଏହି ଅସାଧାରଣ ଗୁଣର ଅଧିକାରୀ କବି ଅନିର୍ବାଣ ଦୀପଶିଖାଟିଏ ହୋଇ ସମଗ୍ର ଭାରତୀୟ ସାହିତ୍ୟ ଜଗତକୁ ଆଲୋକିତ କରି ଦୀର୍ଘକାଳ ରଖିଥିଲେ । ତାଙ୍କ ସାହିତ୍ୟକୃତିଗୁଡ଼ିକରେ ନାଟକ, ରାଜନୀତି, ଇତିହାସ, ଦେଶପ୍ରେମ, ଭୂଗୋଳ, ଭକ୍ତି ଚେତନା, ଆଧ୍ୟାତ୍ମିକ, ସାମାଜିକ ଶିକ୍ଷା, ପୌରାଣିକ ତଥ୍ୟ, ନୀତିଶିକ୍ଷା ଓ ଶିଶୁସାହିତ୍ୟର ଉପାଦାନ ଭରି ରହିଛି । ଭାରତର ବିଭିନ୍ନ ସ୍ଥାନ ଭ୍ରମଣ କରି ସେ ଯେଉଁ ଅନୁଭୂତି ସଂଗ୍ରହ କରିଥିଲେ, ତାକୁ ମଧ୍ୟ ସେ ନିଜ କାବ୍ୟକୃତିରେ ସ୍ଥାନିତ କରିଛନ୍ତି । ତାଙ୍କର ଜୀବନଶୈଳୀ ଥିଲା–ଅତ୍ୟନ୍ତ ସରଳ ଓ ନିରାଡ଼ମ୍ବର ।

କବି ଦାମୋଦର ଥିଲେ ସଂସ୍କୃତ ଭାଷା–ସାହିତ୍ୟର ଜଣେ ଧୂରୀଣ ପଣ୍ଡିତ । ୧୯୦୬ ମସିହାବେଳକୁ ସେ ଭାରତରେ ଜଣେ ଶ୍ରେଷ୍ଠ ବିଦ୍ୱାନଭାବେ ପରିଚିତ ହୋଇସାରିଥିଲେ । ସଂସ୍କୃତ ଶ୍ଳୋକ ରଚନା କ୍ଷେତ୍ରରେ ସେ ଥିଲେ, ଅଦ୍ୱିତୀୟ ତଥା ବିରଳ ବିଦ୍ଧାଣି । ସେ ସମସ୍ତ ପତ୍ରାଳାପ ମଧ୍ୟ ଶ୍ଳୋକ ମାଧ୍ୟମରେ ହିଁ କରୁଥିଲେ । ତାଙ୍କର ଅଗାଧ ସଂସ୍କୃତ ଜ୍ଞାନକୁ ଲକ୍ଷ୍ୟକରି ତତ୍କାଳୀନ ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ଉଚ୍ଚ ପ୍ରଶଂସା କରିଛନ୍ତି । ୧୯୧୫ ମସିହାରେ ପ୍ରକାଶିତ 'କନକବର୍ଷ ଚରିତମ୍' ପୁସ୍ତକଟି ପଣ୍ଡିତ ମଣ୍ଡଳୀଙ୍କଦ୍ୱାରା ଆଦୃତ ହୋଇ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ପାଠ୍ୟପୁସ୍ତକ ଭାବରେ ଅଦ୍ୟାପି ପ୍ରଚଳିତ ।

ତାଙ୍କର ନାଟକଗୁଡ଼ିକ ଓଡ଼ିଶାର ବିଭିନ୍ନ ସ୍ଥାନରେ ମଞ୍ଚସ୍ଥ ହୋଇ ଯଥେଷ୍ଟ ଲୋକପ୍ରିୟତା ହାସଲ କରିଥିଲା ।

ଏକାଅଶୀ ବର୍ଷ ବୟସରେ ୧୯୫୩ ମସିହା ଅକ୍ଟୋବର ୧୩ ତାରିଖରେ ଏହି ମହାନ୍ କବିଙ୍କ ଦେହାବସାନ ଘଟିଲା ।

**ସହାୟକ ଗ୍ରନ୍ଥ**

କନିକା ମାଟିର ସାରସ୍ୱତ ପ୍ରତିଭା– ଧୀରେନ୍ଦ୍ର କୁମାର ବାରିକ–ପ୍ରଥମ ଭାଗ(୨୦୧୯)
କନିକାଶ୍ରୀ– ଉଜିରବେଗ ସାହିତ୍ୟ ସଂସ୍କୃତି ପରିଷଦ, ରାଜକନିକା–୨୦୧୪

ଭି.ଆଇ.ଏମ୍–୫୫
ଶୈଳଶ୍ରୀ ବିହାର, ଭୁବନେଶ୍ୱର–୭୫୧୦୨୧



# ଓଡ଼ିଶାରେ ଜନପ୍ରିୟ ବିଜ୍ଞାନର ସ୍ରଷ୍ଟା : ଗୋକୁଳାନନ୍ଦ ମହାପାତ୍ର

ଇଂ. ମାୟାଧର ସ୍ୱାଇଁ

ଏହି ବର୍ଷ ଓଡ଼ିଶାରେ ପ୍ରଫେସର ଗୋକୁଳାନନ୍ଦ ମହାପାତ୍ରଙ୍କର ଜନ୍ମ ଶତବାର୍ଷିକୀ ପାଳନ କରାଯାଉଛି । ସେ ଥିଲେ ଓଡ଼ିଶାରେ ଜନପ୍ରିୟ ବିଜ୍ଞାନ ଓ ବିଜ୍ଞାନ ସାହିତ୍ୟର ସ୍ରଷ୍ଟା । ସେ ୧୯୨୨ ମସିହା ମଇ ମାସ ୨୪ ତାରିଖରେ ଭଦ୍ରକ ନିକଟସ୍ଥ କୁଆଁସ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତା ଗୋବିନ୍ଦ ମହାପାତ୍ର ଓ ମାତା ଫୁଳଦେବୀଙ୍କ ପାଞ୍ଚ ଜଣ ସନ୍ତାନ ମଧ୍ୟରେ ସେ ସବୁଠାରୁ ସାନ ଥିଲେ । ତାଙ୍କର ତିନିଜଣ ଭଉଣୀ ଓ ଜଣେ ଭାଇ ଥିଲେ ।



ଗ୍ରାମ ସ୍କୁଲରୁ ପ୍ରାଥମିକ ଶିକ୍ଷା, ନାରାୟଣ ଚନ୍ଦ୍ର ମାଇନର ସ୍କୁଲରୁ ମଧ୍ୟଇଂରାଜୀ ଓ ଭଦ୍ରକ ଉଚ୍ଚବିଦ୍ୟାଳୟରୁ ମାଟ୍ରିକ୍ ଅଧ୍ୟୟନ ପରେ ପ୍ରଫେସର ଗୋକୁଳାନନ୍ଦ ରେଭେନ୍ସା କଲେଜରୁ ଆଇ.ଏସ୍‌ସି. ଓ ରସାୟନ ବିଜ୍ଞାନ ଅନର୍ସ ନେଇ ବି.ଏସ୍‌ସି. ଅଧ୍ୟୟନ କରିଥିଲେ । ସେତେବେଳେ ରେଭେନ୍ସା କଲେଜରେ ଏମ୍.ଏସ୍‌ସି. ଖୋଲି ନ ଥିଲା । ସେ ତୃତୀୟ ଶ୍ରେଣୀରେ ପଢୁଥିବା ବେଳେ ପିତାଙ୍କର ଏବଂ ବି.ଏସ୍‌ସି. ପଢୁଥିବା ବେଳେ ବଡ଼ଭାଇ ନିତ୍ୟାନନ୍ଦଙ୍କ ମୃତ୍ୟୁ ଯୋଗୁଁ ଓଡ଼ିଶା ବାହାରକୁ ଯାଇ ତାଙ୍କପକ୍ଷେ ସ୍ନାତକୋତ୍ତର ଶିକ୍ଷା ଅସମ୍ଭବ ମନେ ହୋଇଥିଲା । ଏହି ସମୟରେ ତାଙ୍କର ବିବାହ କୁଆଁସ ଜମିଦାର ବିନୋଦ ବିହାରୀ ରାୟଙ୍କ ଜ୍ୟେଷ୍ଠା କନ୍ୟା କୁମୁଦିନୀଙ୍କ ସହ ହେଲା ଏବଂ ଶ୍ୱଶୁରଙ୍କ ଆର୍ଥିକ ସାହାଯ୍ୟ ଓ ଚେଷ୍ଟା ଫଳରେ ସେ କଲିକତାର ପ୍ରେସିଡେନ୍ସି କଲେଜରେ ଏମ୍.ଏସସି. ଅଧ୍ୟୟନ କଲେ । ଏହାପରେ ସେ ୧୯୪୮ ମସିହାରେ ରେଭେନ୍ସା କଲେଜରେ ଅଧ୍ୟାପକ ଭାବେ ଯୋଗଦେଲେ । ସମୟକ୍ରମେ ସେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ । ସେ ୧୯୬୧ ମସିହା ଜୁନ୍ ମାସରୁ ୧୯୬୩ ମସିହା ନଭେମ୍ବର ମାସ ପର୍ଯ୍ୟନ୍ତ ଯୁକ୍ତରାଷ୍ଟ୍ର ଆମେରିକାର ବୋଷ୍ଟନ୍‌ସ୍ଥିତ ବ୍ରାଣ୍ଡିସ୍ ବିଶ୍ୱବିଦ୍ୟାଳୟରେ ପ୍ରଫେସର ଏ.ଆର୍. ଟୋଡ୍‌ଙ୍କ ଅଧୀନରେ ଡିଏନ୍‌ଏ ସଂରଚନା ଉପରେ କାର୍ଯ୍ୟ କରିଥିଲେ । ୧୯୬୩ ମସିହାରେ ସେଠାରୁ ଫେରିବା ପରେ ସେ ୧୯୮୦ ମସିହାରେ ଅବସର ନେବା ପର୍ଯ୍ୟନ୍ତ ରେଭେନ୍ସା କଲେଜର ରସାୟନ ବିଜ୍ଞାନ ବିଭାଗର ଅଧ୍ୟାପକ, ପ୍ରାଧ୍ୟାପକ, ପ୍ରଫେସର ଓ ବିଭାଗୀୟ ମୁଖ୍ୟ ଭାବେ କାର୍ଯ୍ୟ କରିଥିଲେ । ଅବଶ୍ୟ ୧୯୭୦ ମସିହାରେ

ସେ ଅଳ୍ପଦିନ ପାଇଁ ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର ନିର୍ଦ୍ଦେଶକ ଥିଲେ ।

ଗୋକୁଳାନନ୍ଦ ମହାପାତ୍ର ଜଣେ ବିଶିଷ୍ଟ ରସାୟନବିତ୍ ଥିଲେ । ସେ ଜାତୀୟ ଓ ଅନ୍ତର୍ଜାତୀୟ ପତ୍ରିକାରେ ପଚାଶରୁ ଉର୍ଦ୍ଧ୍ୱ ଗବେଷଣାତ୍ମକ ନିବନ୍ଧ ପ୍ରକାଶ କରିଥିଲେ । ତାଙ୍କ ଅଧୀନରେ ଗବେଷଣା କରି ଦଶଜଣ ଗବେଷକ ପିଏଚ୍.ଡି. ଡିଗ୍ରୀ ଲାଭ କରିଥିଲେ । କିନ୍ତୁ ଓଡ଼ିଶାରେ ଜଣେ ଜନପ୍ରିୟ ବିଜ୍ଞାନ ଲେଖକ ଭାବେ ସେ ଅଧିକ ଜଣା ।

ଗୋକୁଳାନନ୍ଦ କଲିକତାରେ ଅଧ୍ୟୟନ କରୁଥିବା ବେଳେ ଜନପ୍ରିୟ ବିଜ୍ଞାନ ରଚନାର ଭାବନା ତାଙ୍କ ମନରେ ଉଦ୍ରେକ ହୋଇଥିଲା । ସେତେବେଳେ ସତ୍ୟେନ୍ ବୋଷ, ଜଗଦୀଶ ଚନ୍ଦ୍ର ବୋଷ ଓ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଆଦି ବିଶିଷ୍ଟ ବୈଜ୍ଞାନିକମାନେ ବିଜ୍ଞାନର ଗୋଟିଏ ଗୋଟିଏ ବିଷୟରେ ଛୋଟ ବହି ବଙ୍ଗଳା ଭାଷାରେ ଲେଖୁଥିଲେ ଏବଂ ଏହା ସାଧାରଣରେ ବହୁତ ଆଦୃତ ହେଉଥିଲା । ଏଥିରୁ ପ୍ରେରଣା ପାଇ ଗୋକୁଳାନନ୍ଦ ଓଡ଼ିଆ ଭାଷାରେ ବିଜ୍ଞାନ ପ୍ରବନ୍ଧ ଲେଖିଲେ । ତାଙ୍କର ପ୍ରଥମ ପ୍ରବନ୍ଧ 'ଆଧୁନିକ ବିଜ୍ଞାନକୁ ଆଲକାତରାର ସାହାଯ୍ୟ' ଡଃ ମାୟାଧର ମାନସିଂହଙ୍କ ସଂପାଦିତ 'ଶଙ୍ଖ' ପତ୍ରିକାରେ ୧୯୪୬ ମସିହା ଜୁଲାଇ ମାସରେ ପ୍ରକାଶ ପାଇଥିଲା । ଏହାପରେ ତାଙ୍କର ଅନ୍ୟ କେତୋଟି ପ୍ରବନ୍ଧ 'ସହକାର', 'ବୀଣା', 'ତୁରଙ୍ଗ' ଓ 'ନବ ଭାରତ' ପତ୍ରିକାରେ ପ୍ରକାଶ ପାଇଥିଲା । ଏହିସବୁ ପ୍ରବନ୍ଧକୁ ଏକାଠି କରି ତାଙ୍କର ପ୍ରଥମ ପୁସ୍ତକ 'ବିଜ୍ଞାନ ବିସ୍ମୟ' ୧୯୪୮ ମସିହାରେ ପ୍ରକାଶ ପାଇଲା । ଏହା ଥିଲା ପ୍ରଥମ ଓଡ଼ିଆ ବିଜ୍ଞାନ ପୁସ୍ତକ । ତାଙ୍କର ଦ୍ୱିତୀୟ ପୁସ୍ତକ 'ବିଜ୍ଞାନ କୃତିତ୍ୱ' ପ୍ରଥମ ଓ ଦ୍ୱିତୀୟ ଭାଗ ୧୯୫୦ ମସିହାରେ ପ୍ରକାଶ ପାଇଲା । ପରେ ପରେ ସେ ୧୦୦ରୁ ଅଧିକ ବିଜ୍ଞାନ ପୁସ୍ତକ ରଚନା କରିଛନ୍ତି ।

ବଙ୍ଗଳା ଭାଷାରେ ଯେପରି ଏକ ନିର୍ଦ୍ଦିଷ୍ଟ ବିଷୟ ଉପରେ ଗୋଟିଏ ଗୋଟିଏ ବହି ଲେଖାଯାଇଥିଲା, ଗୋକୁଳାନନ୍ଦ ସେହିପରି ଗୋଟିଏ ଗୋଟିଏ ବିଷୟକୁ ନେଇ ପୁସ୍ତକ ରଚନା କରିଛନ୍ତି । ତାଙ୍କର ଏହି ଶ୍ରେଣୀର ପୁସ୍ତକଗୁଡ଼ିକ ମଧ୍ୟରୁ କେତୋଟି ହେଉଛି କମ୍ପ୍ୟୁଟର, ଆଧୁନିକ ଚଳଚ୍ଚିତ୍ର, ଦୂରବୀକ୍ଷଣ ଯନ୍ତ୍ର, ଅଣୁବୀକ୍ଷଣ ଯନ୍ତ୍ର, ଟେଲିଗ୍ରାଫ୍ ଓ ଟେଲିଫୋନ୍, ଭିଟାମିନ୍ ଓ ହରମୋନ୍, ଯନ୍ତ୍ରମଣିଷ, ପରମାଣୁ ବୋମା, ଅତି ମାରାତ୍ମକ କର୍କଟ ରୋଗ, ରେଡ଼ିଓ ଓ ରାଡ଼ାର, ପ୍ରତିବସ୍ତୁ ଓ ଏହାର ପ୍ରହେଳିକା, ବିଚିତ୍ର ବିଶ୍ୱ, ଆଲକତାରା, ଚନ୍ଦ୍ର ଅଭିଯାନ ଆଦି ।

ବିଜ୍ଞାନ ଉପନ୍ୟାସ ଓ ଗଳ୍ପ ରଚନା କରିବାରେ ଗୋକୁଳାନନ୍ଦ ହେଉଛନ୍ତି ପ୍ରଥମ ଓଡ଼ିଆ । ସେ ୧୯୫୩ ମସିହାରେ ପ୍ରଥମ ବୈଜ୍ଞାନିକ ଉପନ୍ୟାସ 'ପୃଥିବୀ ବାହାରେ ମଣିଷ' ରଚନା କରିଥିଲେ । କଳ୍ପନା ଓ ବୈଜ୍ଞାନିକ ତଥ୍ୟ ଆଧାରରେ ଏହା ହେଉଛି ଏକ ଯୁଗାନ୍ତକାରୀ ପୁସ୍ତକ । 'ଉଡ଼ନ୍ତା ଥାଳିଆ', 'ନିଃଶବ୍ଦ ଗୋଧୂଳି', 'ଚନ୍ଦ୍ରର ମୃତ୍ୟୁ', 'ସମୟର ଫାଟ', 'ମୃତ୍ୟୁ ଏକ ମାତୃତ୍ୱର' ଆଦି ହେଉଛି ତାଙ୍କ ଉପନ୍ୟାସ । 'ଚତୁର୍ଥ ପରିସର' ଓ 'ମୃତ୍ୟୁ ରଶ୍ମି' ହେଉଛି ତାଙ୍କ ରଚିତ ବୈଜ୍ଞାନିକ କ୍ଷୁଦ୍ରଗଳ୍ପ ସଂକଳନ । ଏତଦ୍‌ବ୍ୟତୀତ ସେ 'ରାଜନର୍ତ୍ତକୀ' ବିଜ୍ଞାନ ନାଟକ ଏବଂ 'ନୀଳ ଚକ୍ରବାଳ ସେପାରେ', 'ପାଶ୍ଚାତ୍ୟ ସ୍ମୃତି' ଓ 'ୟୁରୋପ ଭ୍ରମଣ' ଆଦି ଭ୍ରମଣ କାହାଣୀ ପୁସ୍ତକ ରଚନା କରିଥିଲେ ।

ପିଲାମାନଙ୍କ ପାଇଁ ସେ ସରଳ ଭାଷାରେ କେତୋଟି ଶିଶୁ ବିଜ୍ଞାନ ପୁସ୍ତକ ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ କିଏ ବେଶି ଭାରୀ, ତୁମକୁ ସତ ମୋତେ ମିଛ, ପୃଥିବୀର ସପ୍ତାଶ୍ଚର୍ଯ୍ୟ, ତରଳ ବାୟୁ ଓ ତତଲା ବରଫ, ଚିନି କେମିତି ତିଆରି ହୁଏ, କାଚ କେମିତି ତିଆରି ହୁଏ, କାଗଜ କେମିତି ତିଆରି ହୁଏ, ସାର କେମିତି ତିଆରି ହୁଏ ଆଦି ଅନ୍ୟତମ ।

ଓଡ଼ିଆ ଭାଷାରେ ବିଜ୍ଞାନ ପାଠ୍ୟପୁସ୍ତକ ରଚନାରେ ସେ ହେଉଛନ୍ତି ଅଗ୍ରଣୀ ଲେଖକ । ୧୯୪୪ ମସିହା ପୂର୍ବରୁ ଓଡ଼ିଆ ହାଇସ୍କୁଲଗୁଡ଼ିକରେ ସମସ୍ତ ବିଷୟ ଇଂରାଜୀ ମାଧ୍ୟମରେ ପଢ଼ା ଯାଉଥିଲା ଏବଂ ଏହାକୁ ପର୍ଯ୍ୟାୟକ୍ରମେ ଓଡ଼ିଆ ମାଧ୍ୟମରେ ପଢ଼ାଇବା ପାଇଁ ସେହି ବର୍ଷ ସ୍ଥିର କରାଗଲା । ସେହି ଅନୁଯାୟୀ ଅନ୍ୟ ସମସ୍ତ ବିଷୟ ଓଡ଼ିଆରେ ପଢ଼ାଯିବା ପରେ ୧୯୪୭ ମସିହାରେ

ବିଜ୍ଞାନକୁ ଓଡ଼ିଆରେ ପଢ଼ାଗଲା । କିନ୍ତୁ ସେଥିରେ ପାଠ୍ୟପୁସ୍ତକ ନ ଥିଲା । କୌଣସି କଲେଜ ଅଧ୍ୟାପକ ଓଡ଼ିଆରେ ବିଜ୍ଞାନ ଲେଖିଲେ ତାଙ୍କର ସମ୍ମାନ ହାନି ହେବ ବୋଲି ମନେ କରୁଥିଲେ । ଖଲିକୋଟ ହାଇସ୍କୁଲର ଶିକ୍ଷକ ରଘୁନାଥ ପାଢ଼ୀ 'ବିଜ୍ଞାନୀକା' ନାମରେ ଗୋଟିଏ କ୍ଷୁଦ୍ର ପୁସ୍ତକ ଲେଖିଥିଲେ ଏବଂ ଏହା ସମସ୍ତ ସ୍କୁଲରେ ପ୍ରଚଳିତ ଥିଲା । କିନ୍ତୁ ଏଥିରେ ପାଠ୍ୟକ୍ରମ ଅନୁଯାୟୀ ସମସ୍ତ ବିଷୟ ନ ଥିଲା ଏବଂ ବିଷୟଗୁଡ଼ିକ ସ୍ପଷ୍ଟ ଭାବେ ବୁଝା ଯାଇନଥିଲା । ଏଣୁ ପିଲାମାନଙ୍କ ସୁବିଧା ପାଇଁ ଗୋକୁଳାନନ୍ଦ ତାଙ୍କ ସହକର୍ମୀ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ ହରିହର ପଟ୍ଟନାୟକଙ୍କ ସହ ମିଶି ୧୯୫୨ ମସିହାରେ 'ସହଜ ସାଧାରଣ ବିଜ୍ଞାନ' ପ୍ରଥମ ଓ ଦ୍ୱିତୀୟ ଭାଗ ଯଥାକ୍ରମେ ଷଷ୍ଠ ଓ ସପ୍ତମ ଶ୍ରେଣୀ ପାଇଁ ଲେଖିଲେ । ଏଥିପାଇଁ ତାଙ୍କୁ ଅନେକ ଅଧ୍ୟାପକ ସମାଲୋଚନା କରିଥିଲେ । କିନ୍ତୁ ସେ ଏହାକୁ ଖାତିର ନ କରି ଅଷ୍ଟମରୁ ଏକାଦଶ ଶ୍ରେଣୀ ପାଇଁ 'ପ୍ରବେଶିକା ସାଧାରଣ ବିଜ୍ଞାନ' ପୁସ୍ତକ ଲେଖିଥିଲେ । ସେ ମଧ୍ୟ କଲେଜ ଛାତ୍ରଛାତ୍ରୀମାନଙ୍କ ପାଇଁ ଇଂରାଜୀରେ କେତୋଟି ରସାୟନ ବିଜ୍ଞାନ ପାଠ୍ୟପୁସ୍ତକ ରଚନା କରିଥିଲେ ।

ଗୋକୁଳାନନ୍ଦ ନିଜେ ଓଡ଼ିଆରେ ବିଜ୍ଞାନ ଲେଖିବା ସହିତ ଅନ୍ୟମାନଙ୍କୁ ଏଥିପାଇଁ ଉତ୍ସାହିତ କରିଥିଲେ । ତାଙ୍କ ପ୍ରେରଣାରେ ଓଡ଼ିଶାରେ ଅନେକ ଜନପ୍ରିୟ ବିଜ୍ଞାନ ଲେଖକ ସୃଷ୍ଟି ହୋଇଛନ୍ତି । ଓଡ଼ିଆରେ ବିଜ୍ଞାନ ଲେଖିବାରେ ସୁବିଧା ପାଇଁ ସେ ଇଂରାଜୀ-ଓଡ଼ିଆ ପରିଭାଷା ପ୍ରସ୍ତୁତ କରିଥିଲେ । ସେ ୧୯୮୬ ମସିହାରେ 'ବୈଜ୍ଞାନିକ ପାରିଭାଷିକ ଶବ୍ଦାବଳୀ' ରଚନା କରିଥିଲେ । ତାଙ୍କ ରଚିତ 'ରସାୟନ ବିଜ୍ଞାନ ଅଭିଧାନ' ପୁସ୍ତକକୁ ଓଡ଼ିଶା ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ୧୯୮୭ ମସିହାରେ ପ୍ରକାଶ କରିଥିଲା । ଓଡ଼ିଆରେ ବିଜ୍ଞାନର ପ୍ରଚାର ପାଇଁ ତାଙ୍କର ଏକ ବଡ଼ ଅବଦାନ ହେଉଛି 'ବୈଜ୍ଞାନିକ ଜ୍ଞାନକୋଷ' । ୧୭୦୦ ପୃଷ୍ଠାର ଦୁଇ ଖଣ୍ଡରେ ପ୍ରକାଶିତ ଏହି ପୁସ୍ତକରେ ଓଡ଼ିଆ ଅକ୍ଷର ଅନୁକ୍ରମରେ ଅନେକ ବିଜ୍ଞାନ ବିଷୟ ସୁନ୍ଦର ଭାବେ ବର୍ଣ୍ଣନା କରାଯିବା ସହିତ ଏଥିରେ ଅନେକ ଚିତ୍ର ରହିଛି । ଏହା ୨୦୦୫ ମସିହାରେ ପ୍ରକାଶ ପାଇଥିଲା । ଏହା ବ୍ୟତୀତ ସେ ୨୦୧୦ ମସିହାରେ 'ସଚିତ୍ର ବୈଜ୍ଞାନିକ ଶବ୍ଦକୋଷ' ନାମରେ ଗୋଟିଏ ଇଂରାଜୀ-ଓଡ଼ିଆ ଅଭିଧାନ ମଧ୍ୟ ଲେଖିଛନ୍ତି । ତାଙ୍କ ସମେତ ନଅଜଣ ଅଧ୍ୟାପକ ଓ ଡାକ୍ତର ମିଶି ୧୯୪୯ ମସିହାରେ ବିଜ୍ଞାନ ପ୍ରଚାର ସମିତି ଗଠନ କରି ସେ ମୃତ୍ୟୁ ପର୍ଯ୍ୟନ୍ତ ବିଜ୍ଞାନର ପ୍ରଚାର ଓ ପ୍ରସାର କରିଥିଲେ ।

ବିଜ୍ଞାନକୁ ଜନପ୍ରିୟ କରିଥିବାରୁ ଓ ବିଜ୍ଞାନ ସାହିତ୍ୟରେ ଉତ୍କର୍ଷ ଲାଭ କରିଥିବାରୁ ସେ ଅନେକ ପ୍ରସିଦ୍ଧ ସଂଗଠନରୁ ସମ୍ମାନିତ ହୋଇଛନ୍ତି । ସେ ଲାଭ କରିଥିବା କେତେଗୋଟି ପୁରସ୍କାର ହେଉଛି ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର (୧୯୬୪), ସାରଳା ପୁରସ୍କାର (୧୯୯୪), ଉତ୍କଳ ସାହିତ୍ୟ ସମାଜର ପ୍ରାଣକୃଷ୍ଣ ପରିଜା ବିଜ୍ଞାନ ସାହିତ୍ୟ ସମ୍ମାନ (୧୯୯୫), ଓଡ଼ିଶା ପରିବେଶ ସମିତି ପୁରସ୍କାର (୧୯୯୬), ଓଡ଼ିଶା ବିଜ୍ଞାନ ଏକାଡେମୀର ବରିଷ୍ଠ ବୈଜ୍ଞାନିକ ସମ୍ମାନ (୨୦୦୨) ଏବଂ କଳିଙ୍ଗ ସମ୍ମାନ (୨୦୧୦) ହେଉଛି ଅନ୍ୟତମ ।

ଓଡ଼ିଆ ବିଜ୍ଞାନ ସାହିତ୍ୟର କର୍ଣ୍ଣଧାର ପ୍ରଫେସର ଗୋକୁଳାନନ୍ଦ ମହାପାତ୍ର ୨୦୧୩ ମସିହା ଜୁଲାଇ ମାସ ୧୦ ତାରିଖରେ ଗୁଜୁରାଟର ଅହମ୍ମଦାବାଦଠାରେ ନିଜ ପୁତ୍ର ନନ୍ଦନନ୍ଦନ ମହାପାତ୍ରଙ୍କ ବାସଭବନରେ ଶେଷ ନିଃଶ୍ୱାସ ତ୍ୟାଗ କଲେ । ଓଡ଼ିଆ ସାହିତ୍ୟକୁ ତାଙ୍କ ଅବଦାନ ପାଇଁ ସେ ଚିର ସ୍ମରଣୀୟ ହୋଇରହିବେ । ତାଙ୍କ ଜନ୍ମ ଶତବାର୍ଷିକୀରେ ତାଙ୍କୁ ଆମର ବିନମ୍ର ଶ୍ରଦ୍ଧାଞ୍ଜଳି ।

ସଂପାଦକ, ସାଇନ୍ସ ହୋରିଜନ୍
୭୦, ଲକ୍ଷ୍ମୀବିହାର, ଫେଜ୍-୧
ଭୁବନେଶ୍ୱର-୭୫୧୦୧୮



# ଶିଳାଲିପିରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ଆଦେଶ

ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ତ୍ରିପାଠୀ

ସେଦିନ ଥିଲା ଜ୍ୟୋସ୍ନାଧୌତ ପୂର୍ଣ୍ଣମୀ ରାତ୍ରୀର ଶେଷ ପ୍ରହର । ଅଶାନ୍ତ ସାଗରର ବାରିକଣାକୁ ନେଇ ବହି ଆସୁଥିବା ମୃଦୁ ମଳୟ ହିଲ୍ଲୋଳର ପରଶରେ ଦେହ ହେଉଥିଲା ପୁଲକିତ । ସେପରି ଏକ ପରିବେଶରେ ମାଳିନୀ ବୃଦ୍ଧା କ୍ଷେତରେ ବାଇଗଣ ତୋଳିବାରେ ଥିଲେ ବ୍ୟସ୍ତ । ସେତେବେଳେ ତାଙ୍କ କଣ୍ଠରୁ ଭାସିଆସୁଥିଲା ଦେବ ବନ୍ଦିତ 'ଶ୍ରୀଗୀତଗୋବିନ୍ଦ'ର ଅମୃତ ପଦାବଳୀରୁ କେତୋଟି ପଦ–''ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ.... ।'' ଆଉ ସେହି ସ୍ୱର ସହ ତାଳ ମିଳାଇ ଭାସି ଆସୁଥିଲା ବଂଶୀର ମଧୁର ନାଦ । ସେପରି ନାଦ ଶୁଣି ଥମିଗଲା ବୃଦ୍ଧାଙ୍କର କଣ୍ଠସ୍ୱର । ବିସ୍ମିତ ହୋଇ ସେ ଚାହିଁରହିଲେ ଚାରିଆଡ଼କୁ । କାହିଁ! କେଉଁଆଡ଼େ କେହିତ ନାହାନ୍ତି? ମନରେ ଆସିଲା ତାଙ୍କର ଦ୍ୱନ୍ଦ୍ୱ । ପୁଣି ଗାଇଉଠିଲେ ବୃଦ୍ଧା । ଭାସିଆସିଥିଲା ପୁଣି ସେହି ଅପୂର୍ବ ବଂଶୀ ନାଦ । ପଛକୁ ଚାହିଁଦେଲେ ବୃଦ୍ଧା । ଦେଖିଲେ ନୀରଦ ନିନ୍ଦିତ କାନ୍ତିର ଅପୂର୍ବ ବାଳକଟିଏ ବଂଶୀ ବଜାଇ ତାଙ୍କୁ ଅନୁସରଣ କରି ଢଳି ଢଳି ନୃତ୍ୟ କରିଚାଲିଛନ୍ତି । ଗଳାରୁ ପାଦ ପର୍ଯ୍ୟନ୍ତ ତାଙ୍କର ଲମ୍ବିଯାଇଥିଲା ସୁନ୍ଦର ବନଫୁଲର ମାଳ । କଟୀରେ ପିନ୍ଧିଥିବା ପୀତାମ୍ବର ସମୀର ପରଶରେ ଉଡୁଥିବାବେଳେ ଦୋହଲି ଉଠୁଥିଲା ତାଙ୍କ ଗଭା ଖୋସିତ ବାଙ୍କ ଶିଖଣ୍ଡ ଚୂଳ । ମୃଦୁମନ୍ଦ ସମୀରଣରେ ଭାସି ଆସୁଥିଲା ମୃଗମଦ କସ୍ତୁରୀ ଓ ଚନ୍ଦନର ମହକ । ହତବାକ୍ ହେଲେ ବୃଦ୍ଧା । କଣ୍ଠରୁ ଥମିଗଲା ତାଙ୍କର ଶ୍ରୀଗୀତଗୋବିନ୍ଦ ସ୍ୱର । ଆଉ ଚେତନାଶୂନ୍ୟ ଦେହ ତାଙ୍କର ଲୋଟି ପଡ଼ିଲା ସେହି ବାଇଗଣ କ୍ଷେତରେ ।

ପ୍ରତ୍ୟୁଷରେ ଘରେ ନ ପହଞ୍ଚିବାରୁ ପରିବାର ଲୋକେ ତାଙ୍କୁ ଖୋଜି ପାଇଲେ ବାଇଗଣ କ୍ଷେତରେ । ଚେତନାଶୂନ୍ୟ ଶରୀରର ଉପଚାର ପରେ ବୃଦ୍ଧାଙ୍କର ପଛ କଥାସବୁ ମନେ ପଡ଼ିଗଲା । ପରିବାରର ଲୋକମାନଙ୍କ ଆଗରେ ଦେଖିଥିବା କଥାକୁ ସେ ବର୍ଣ୍ଣନା କଲେ । ଚମତ୍କୃତ ପରିବାର କେବଳ ଦୁଇହାତ ଯୋଡ଼ି ସେହି ଅଦୃଶ୍ୟ ସ୍ରଷ୍ଟାଙ୍କୁ ଶତ ପ୍ରଣାମ ଜଣାଇ ମାତାଙ୍କ ପାଦ ଦୁଇଟିକୁ ଜାବୁଡ଼ି ଧରିଥିଲେ । ପ୍ରତିଟିଙ୍କର ମୁହଁରୁ ଶୁଣାଗଲା– ''ଧନ୍ୟ। ତୁମେ ମାତା! ଜଗତର ସମସ୍ତ ପ୍ରାଣୀ ଯାହାଙ୍କୁ ପାଇବା ପାଇଁ ବ୍ୟାକୁଳ ତୁମେ ତାଙ୍କୁ ଆଜି ଦେଖିପାରିଲ? ତୁମକୁ ମା' ଭାବରେ ପାଇ ଆମେ ଆଜି ଧନ୍ୟ ହୋଇଗଲୁ ।''

ଏଣେ ପ୍ରତ୍ୟୁଷରୁ ସେବା ଆରମ୍ଭ ନିମନ୍ତେ ଶ୍ରୀମନ୍ଦିର କବାଟ ଖୋଲିବା ପରେ ଦେଖାଗଲା ପ୍ରଭୁଙ୍କୁ ପୂର୍ବ ରାତ୍ରୀରୁ ପିନ୍ଧାଯାଇଥିବା ଶ୍ରୀଗୀତଗୋବିନ୍ଦ ପଦାବଳୀ ଲେଖାଥିବା ଖଣ୍ଡୁଆରେ ଲାଗିଛି ବାଇଗଣ ପତ୍ରର କଣ୍ଟା । ଆଉ ତାହାସବୁ ଚିରିଯାଇଛି । କାହିଁକି ଏପରି ହେଲା? ବିସ୍ମୟ ଓ ବିଷାଦରେ ସେବାୟତଗଣ ଥରି ଉଠିଲେ । ନିଶ୍ଚିତ ରାଜଦଣ୍ଡ ଅପେକ୍ଷାରେ କେବଳ ଅଶ୍ରୁ ଗଡ଼ାଇବା ଛଡ଼ା ସେମାନଙ୍କର ଆଉ କିଛି ଉପାୟ ନଥିଲା । କଥାଟା ଯାଇ କଟକର ବାରବାଟୀ ଗଡ଼ରେ ପହଞ୍ଚିଲା ।

ସେତେବେଳେ ଉତ୍କଳର ସମ୍ରାଟ୍ ଥିଲେ ମହାମହିମ ଗଜପତି ପ୍ରତାପରୁଦ୍ର ଦେବ । ଘଟଣା କ'ଣ ଜାଣିବାକୁ ତୁରନ୍ତ ପାତ୍ର, ମନ୍ତ୍ରୀ ଓ ସୁରକ୍ଷାବଳଙ୍କ ମେଳରେ ସେ ଶ୍ରୀକ୍ଷେତ୍ରରେ ପହଞ୍ଚି ସମସ୍ତ କଥା ବୁଝିନେଲେ । ସବୁବର୍ଗର ସେବକମାନଙ୍କର କଥାକୁ ବିଶ୍ୱାସରେ ନେଇ ସମ୍ପୂର୍ଣ୍ଣ ଅନ୍ନଜଳ ତ୍ୟାଗ କରି ପୁରୀସ୍ଥିତ ବାଲିସାହିର ରାଜନିଳୟରେ ବସି ରହିଲେ ମହାମହିମ । ପଥଶ୍ରମରେ ତାଙ୍କର କେତେବେଳେ ନିଦ୍ରା ଆସିଯାଇଥିଲା । ଆଉ ସେପରି ନିଦ୍ରା ଯାଇଥିବାବେଳେ ସେ ଦେଖିଲେ ଜଣେ ଦେବପୁରୁଷ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇ କହୁଛନ୍ତି, ''ହେ ରାଉତ! ସେବକମାନଙ୍କର ସେବାରେ କୌଣସି ବ୍ୟତିକ୍ରମ ହୋଇନାହିଁ । ସମୁଦ୍ର ନିକଟରେ ଥିବା ଏକ କଣ୍ଟକିତ ବାଇଗଣ କିଆରୀରେ ବୃଦ୍ଧା ମାଳିନୀ 'ଶ୍ରୀଗୀତଗୋବିନ୍ଦ' ବୋଲି ବାଇଗଣ ତୋଳୁଥିଲା । ତାହାର ସେହି ମଧୁର ସ୍ୱରରେ ଆକୃଷ୍ଟ ହୋଇ ମୁଁ ରତ୍ନ ସିଂହାସନ ଛାଡ଼ି ତାହା ପଛରେ ବଂଶୀ ବଜାଇ ଘୂରି ବୁଲୁଥିଲି । ସେଥିପାଇଁ ପିନ୍ଧିଥିବା ପାଟପୀତାମ୍ବର କଣ୍ଟକିତ ହୋଇଯାଇଛି ।'' ଏପରି ସ୍ୱପ୍ନରେ ହଠାତ୍ ନିଦ୍ରାରୁ ଉଠିବସିଲେ ଗଜପତି ସମ୍ରାଟ୍ । ଖୋଜା ପଡ଼ିଲା ସେହି ବୃଦ୍ଧା ମାଳିନୀଙ୍କୁ । ଆଉ ତାଙ୍କୁ ବି ପାଇଗଲେ ରାଜ ଅନୁଚରଗଣ । ରାଜୋଚିତ ସମସ୍ତ କ୍ଷମତା ଓ ସମ୍ମାନକୁ ତୁଚ୍ଛ କରି ମୁକ୍ତ ପଦରେ ଧାଇଁ ଗଲେ ଗଜପତି ସମ୍ରାଟ୍ ସେହି ମାଳିନୀଙ୍କର ଗୃହକୁ । ବୃଦ୍ଧାଙ୍କର ପଦ ଦୁଇଟିକୁ ଧରି କାନ୍ଦି ଉଠିଲେ ମହାମହିମ । ଅବିରତ ତାଙ୍କ ଚକ୍ଷୁରୁ ବହିଯାଉଥିବା ଅଶ୍ରୁ ଧାରରେ ବୃଦ୍ଧାଙ୍କର ପଦଯୁଗଳ ତିନ୍ତିଗଲା । ମସ୍ତକ ଉଠାଇ ଯୋଡ଼ ହସ୍ତରେ ଗଜପତି କହିଲେ ଧନ୍ୟ ମାତା । ତୁମେ ଆଜି ସମସ୍ତ ଓଡ଼ିଆଙ୍କର ପୂଜ୍ୟା । ପ୍ରଭୁଙ୍କୁ ସ୍ୱଚକ୍ଷୁରେ ତୁମେ ଦେଖିପାରିଲ? ତୁମ କଣ୍ଠ ନିସୃତ ଶ୍ରୀଗୀତଗୋବିନ୍ଦର ମଧୁର ସ୍ୱର ତାଙ୍କୁ ଟାଣି ନେଇଗଲା ତୁମର ବାଇଗଣ କିଆରୀକୁ । ଧନ୍ୟା ହୋଇଗଲ ମାତା । ତୁମ ଭଳି ମାତା ପାଇ ଆଜି ଏହି ଉତ୍କଳ ଧନ୍ୟ । ଯଥୋଚିତ ରାଜକୀୟ ସମ୍ମାନରେ ବୃଦ୍ଧାଙ୍କୁ ପୁରୀରେ ଥିବା ରାଜନବରକୁ ଅଣାଗଲା । ଶ୍ରୀମନ୍ଦିରରେ 'ଶ୍ରୀଗୀତଗୋବିନ୍ଦ' ବୋଲିବା ନିମନ୍ତେ ପର୍ଯ୍ୟାପ୍ତ ଭୂସମ୍ପତ୍ତି ତାଙ୍କୁ ଦିଆଗଲା । ସେହିଦିନଠାରୁ ଶ୍ରୀଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ପ୍ରଭୁଙ୍କ ଛାମୁରେ ବୋଲା ନ ହେବା ପାଇଁ ନିର୍ଦ୍ଦେଶ ହେଲା । ଏଥିପାଇଁ ଥିବା ଶିଳାଲିପିର ସେହି ନିର୍ଦ୍ଦେଶ ଆଜି ବି ଶ୍ରୀମନ୍ଦିରରେ ଦେଖିବାକୁ ମିଳେ । ପୁଣି ଉତ୍କଳର ପ୍ରତିଟି ଦେବପୀଠରେ ଶ୍ରୀଗୀତଗୋବିନ୍ଦ ବୋଲା ହେବା ସହ ତାହା ରାଷ୍ଟ୍ରୀୟ ସଙ୍ଗୀତର ମାନ୍ୟତା ପାଇଥିଲା । ଶ୍ରୀଗୀତଗୋବିନ୍ଦ ଠିଆ ହୋଇ ବୋଲିଲେ ପ୍ରଭୁ ବସି ଶୁଣନ୍ତି ଓ ବସି ବୋଲିଲେ ସେ ଠିଆ ହୋଇ ଶୁଣିଥାନ୍ତି ବୋଲି ପ୍ରବାଦ ଅଛି । ଓଡ଼ିଶା ବ୍ୟତୀତ ଅନ୍ୟ ରାଜ୍ୟ ସ୍ୱତନ୍ତ୍ର ଭାବେ କର୍ଣ୍ଣାଟକ ଓ ଚେନ୍ନାଇ ପ୍ରଭୃତି ଦକ୍ଷିଣ ରାଜ୍ୟମାନଙ୍କରେ ଶ୍ରୀଗୀତଗୋବିନ୍ଦ ବୋଲିଲେ ଭଗବାନ ଶ୍ରୀକୃଷ୍ଣ ବିରାଜମାନ ହୁଅନ୍ତି ବୋଲି କଥା ଅଛି । ସେଥିପାଇଁ ସେମାନଙ୍କର ପ୍ରତି ପରିବାରରେ ସକାଳ ଓ ସନ୍ଧ୍ୟାରେ 'ଶ୍ରୀଗୀତଗୋବିନ୍ଦ' ଗାନ କରାଯାଇଥାଏ । ଏପରି ପରମ୍ପରା ସେଠାରେ ଆଜି ବି ପ୍ରଚଳିତ ।

ଗଜପତି ସମ୍ରାଟ୍ ପ୍ରତାପରୁଦ୍ର ଦେବଙ୍କ ଶ୍ରୀମନ୍ଦିର ଗର୍ଭଗୃହରେ ଥିବା ଶିଳାଲିପିଟି ନିମ୍ନରେ ଦିଆଗଲା ।

ପ୍ରତାପରୁଦ୍ରଙ୍କଦ୍ୱାରା ଶ୍ରୀଗୀତଗୋବିନ୍ଦ ପୁନଃ ପ୍ରଚଳନ:

ବୈଷ୍ଣବଜନମାନଙ୍କ ସନ୍ତୋଷ ବିଧାନ ନିମିତ୍ତ ଗଜପତି ସମ୍ରାଟ୍ ପୁରୁଷୋତ୍ତମଦେବଙ୍କ ପୁତ୍ର ତଥା ଉତ୍ତରାଧିକାରୀ ଗଜପତି ପ୍ରତାପରୁଦ୍ରଦେବ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ ଏକ ରାଜକୀୟ ଘୋଷଣାଦ୍ୱାରା ଶ୍ରୀମନ୍ଦିରରେ ଶ୍ରୀଜୟଦେବ କୃତ ଶ୍ରୀଗୀତଗୋବିନ୍ଦର ପାଠକୁ ବାଧ୍ୟତାମୂଳକ କରିଥିଲେ । ଏହି ଘୋଷଣାଟି ଶ୍ରୀଜଗନ୍ନାଥଙ୍କ ମନ୍ଦିର ଜୟବିଜୟ ଦ୍ୱାରରେ ଲିପିବଦ୍ଧ ହୋଇଛି ।

''ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଳବରଗେସର ବିରବର ଶ୍ରୀ ପ୍ରତାପରୁଦ୍ର

ମାହାରାଜାଙ୍କର ସମସ୍ତ ଅ୪ଙ୍କ ଶ୍ରାହୀ କକଡ଼ା ସୁ ୧୦ ବୁଧବାରେ ଅବଧାରୀତ ଆଇଁଗ୍ୟା ପ୍ରମାଣେ ବଡ଼ଠାକୁରଙ୍କ ଶ୍ରୀଗୀତଗୋବିନ୍ଦ ଠାକୁରଙ୍କ ଭୋଗ ବେଳେ ଏ ନାଟ ହୋଇବ । ସଝଧୂପ ସଲିରା ଠାରୁ ଏ ନାଟ ହୋଇବ । ବଡ଼ଠାକୁରଙ୍କ ସଂପରଦା କପିଳେଶ୍ୱର ଠାକୁରଙ୍କ ବନ୍ଧା ନାଚଣୀମାନ ପୁରୁଣା ସଂପରଦା ତେଲଂଗୀ ସଂପରଦା ଏମାନେ ସବିହେଁ ବଡ଼ଠାକୁରଙ୍କ ଗୀତଗୋବିନ୍ଦହୁଁ ଆନ ଗୀତ ନ ସିଖିବେ । ଆନ ଗୀତ ନ ଗାଇବେ ଆନ ଗୀତ ହୋଇ ପରମେଶ୍ୱରଙ୍କ ଛାମୁରେ ନ ହବ । ଏ ନାଟ ବିତରକେ ବଇଷ୍ଣବ ଗାଆଣ ଚାରୀଜଣ ଅଛନ୍ତି, ଏମାନେ ଗୀତଗୋବିନ୍ଦ ଗୀତହି ସେ ଗାଇବେ । ଏହାଙ୍କଠାରୁ ଅଶିକ୍ଷିତମାନେ ଏକଶୂରରେ ଶୁଣୀ ଗୀତଗୋବିନ୍ଦ ଗୀତ ହିଁ ସେ ଶିଖୀବେ, ଆନ ଗୀତ ନ ଶିଖୀବେ । ଏହା ଜେ ପରିକ୍ଷା ଆନ ଗୀତ ନାଟ କରାଇଲେ ଜାଣୀ ସେ ଜଗନ୍ନାଥଙ୍କ ଦ୍ରୋହ କରଇ । (୧୩)''

ଏହି ଘୋଷଣାର ସମୟ ହେଉଛି ଗଜପତି ପ୍ରତାପରୁଦ୍ର ଦେବଙ୍କ ୪ଅଙ୍କ କକଡ଼ା ଶୁକ୍ଳ ଦଶମୀ ବୁଧବାର । ଗଣନା ଅନୁସାରେ ୧୫୦୦ ଖ୍ରୀଷ୍ଟାବ୍ଦ ଜୁଲାଇ ମାସ ୮ ତାରିଖ ଆଷାଢ଼, ଶୁକ୍ଳ ଦଶମୀ ଦିନ ପଡୁଛି । ସେଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବାହୁଡ଼ା ଉତ୍ସବ ଅନୁଷ୍ଠିତ ହେଉଥିବାରୁ ସମଗ୍ର ଭାରତର ବିଭିନ୍ନ ପ୍ରାନ୍ତରୁ ଆସିଥିବା ସହସ୍ର ସହସ୍ର ଯାତ୍ରୀଙ୍କ ମଧ୍ୟରେ ମହାରାଜାଙ୍କ ଏହି ଘୋଷଣା ବିଦ୍ୟୁତ ବେଗରେ ପ୍ରଚାରିତ ହୋଇଥିଲା । ଏହି ଘୋଷଣା ଅନୁଯାୟୀ ବଳଭଦ୍ର, ବଡ଼ଠାକୁର ଏବଂ ଜଗନ୍ନାଥ ମହାପ୍ରଭୁ ଗୀତଗୋବିନ୍ଦ ଠାକୁର ବା ଶ୍ରୀଗୀତଗୋବିନ୍ଦରେ ସ୍ତୁତ ବା ବନ୍ଦିତ ଦେବତା ରୂପେ ବର୍ଣ୍ଣିତ ହୋଇଛନ୍ତି । ଏଥିରେ ଗଜପତି ମହାରାଜା ମନ୍ଦିର ପରୀକ୍ଷାକୁ ଆଜ୍ଞା ଦେଲେ–

(କ) ପ୍ରତ୍ୟେକ ଭୋଗ ସମୟରେ ଏବଂ ସନ୍ଧ୍ୟାଧୂପ ସରିଲାଠାରୁ ବଡ଼ଶିଙ୍ଗାର ପର୍ଯ୍ୟନ୍ତ କେବଳ ଶ୍ରୀଗୀତଗୋବିନ୍ଦ ବୋଲାଯାଇ ନୃତ୍ୟ ହେବ ।

(ଖ) ବଳଭଦ୍ର ଠାକୁରଙ୍କ ସଂପ୍ରଦାୟ, କପିଳେଶ୍ୱର ଠାକୁରଙ୍କ ବନ୍ଧା (ପୁରୁଷାନୁକ୍ରମିକ ଭୂମିବାଡ଼ି ଭୋଗ କରି ସେବାକୁ ଖଟଣି କୁହାଯାଏ ।) ନର୍ତ୍ତକୀଗଣ, ପୁରୁଣା ସଂପ୍ରଦାୟ ଏବଂ ତେଲେଙ୍ଗା ସଂପ୍ରଦାୟ ଶ୍ରୀଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ଶିଖିବେ ନାହିଁ, ଅନ୍ୟ ଗୀତ ଗାଇବେ ନାହିଁ, ମହାପ୍ରଭୁଙ୍କ ଛାମୁରେ ନୃତ୍ୟ ସମୟରେ ଶ୍ରୀଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ବୋଲାଯିବ ନାହିଁ ।

(ଗ) ଏହି ଚାରି ସଂପ୍ରଦାୟ ବ୍ୟତୀତ ସ୍ୱତନ୍ତ୍ର ଭାବରେ ନିଯୁକ୍ତ ହୋଇଥିବା ଚାରିଜଣ ବୈଷ୍ଣବ ଗାୟକ କେବଳ ଶ୍ରୀଗୀତଗୋବିନ୍ଦ ଗୀତ ଗାନ କରିବେ । ସେମାନେ ଅଶିକ୍ଷିତ ଲୋକମାନଙ୍କୁ କେବଳ ଶ୍ରୀଗୀତଗୋବିନ୍ଦ ଗୀତ ଶିଖାଇବେ, ଅନ୍ୟ ଗୀତ ଶିକ୍ଷା ଦେବେ ନାହିଁ ।

ଯେଉଁ ମନ୍ଦିର ପରିଛା ରାଜାଜ୍ଞା ଅମାନ୍ୟ କରି ଶ୍ରୀଗୀତଗୋବିନ୍ଦ ବ୍ୟତୀତ ଅନ୍ୟ ଗୀତ ବୋଲିବା ପାଇଁ ବା ବୋଲି ନୃତ୍ୟ କରିବା ପାଇଁ ଅନୁମତି ଦେବ ସେ ଜଗନ୍ନାଥଙ୍କଠାରେ ଦ୍ରୋହୀ ହେବ ।

ସେ ଯୁଗରେ ସମଗ୍ର ଭାରତରେ ହିନ୍ଦୁଧର୍ମର ରକ୍ଷକ ରୂପେ ବିବେଚିତ ଲକ୍ଷେ ରାଜାଙ୍କ ମଉଡ଼ମଣି ପରମ ବୈଷ୍ଣବ ଗଜପତି ସମ୍ରାଟ୍ ପ୍ରତାପରୁଦ୍ରଙ୍କର ଏହି ଆଦେଶ ଭାରତବର୍ଷର ଏକ ଶ୍ରେଷ୍ଠ ଯାତ୍ରା ଗୁଣ୍ଡିଚା ମହୋତ୍ସବ ସମୟରେ ପ୍ରଚାରିତ ହେବାରୁ ସମସାମୟିକ ସମାଜରେ ଶ୍ରୀଗୀତଗୋବିନ୍ଦର ଆଦର ଓ ସମ୍ମାନ ଯଥେଷ୍ଟ ବୃଦ୍ଧିଲାଭ କରିଥିଲା ।

ମାଦଳାପାଞ୍ଜିରେ ଥିବା ଉପର ବର୍ଣ୍ଣିତ ଗପ ସହ ଗଜପତିଙ୍କର ଆଦେଶ ଥିବା ଶିଳାଲିପିଟି ମେଳ ଖାଇଯାଉଛି । ବିଶେଷ ଭାବେ ଦକ୍ଷିଣ ଭାରତରେ ଏହାର ପ୍ରଚାର ଓ ପ୍ରସାର ବିଭିନ୍ନ ଟୀକାକାରମାନେ କରିଯାଇଛନ୍ତି ।

ଶହୀଦ ନଗର, ଭୁବନେଶ୍ୱର

# 'ଗୀତଗୋବିନ୍ଦ'ର ଅମର ସ୍ରଷ୍ଟା ଶ୍ରୀଜୟଦେବ

ଜୟଶ୍ରୀ ପଟ୍ଟନାୟକ



ଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱରେ ଆତ୍ମିକ ଚେତନା ରୂପରେ ସବୁଠାରେ ବିରାଜିତ । ସେ ବ୍ରାହ୍ମଣ, ଚଣ୍ଡାଳ, ଧନୀ-ଗରିବ, ଜ୍ଞାନୀ ନିରକ୍ଷର ସମସ୍ତଙ୍କ ଦେବତା । ଯିଏ ତାଙ୍କୁ ଯେପରି ଭାବରେ ଦେଖିବାକୁ ଚାହିଁଛି ସେ ତାଙ୍କୁ ସେହି ରୂପରେ ଦେଖା ଦେଇଛନ୍ତି । ଭକ୍ତି ବିଶ୍ୱାସରେ ତାଙ୍କର କୃପାଲାଭ ହୁଏ । ଭାବକୁ ନିକଟ ସେ ଅଭାବକୁ ଦୂର । ସେ ଭକତ ଜନଙ୍କ ବାନ୍ଧବ, ଭକ୍ତିରେ ପତ୍ର, ଫୁଲ, ଫଳ ଯିଏ ଯାହା ଅର୍ପଣ କରେ ତାହା ସେ ଶ୍ରଦ୍ଧାରେ ଗ୍ରହଣ କରନ୍ତି । ଜଗନ୍ନାଥ ପୀଠ ଅନେକ ଭକ୍ତଙ୍କର ମହାମିଳନ ପୀଠ । ଏହି କ୍ଷେତ୍ରରେ ଆର୍ଯ୍ୟ ଅନାର୍ଯ୍ୟ ସଂସ୍କୃତିର ସମନ୍ୱୟ ଘଟିଛି । ଏହି ସମନ୍ୱୟ ଯୋଗୁଁ ଯୁଗ ଯୁଗ ଧରି ଅନେକ ସାଧକ, ଭକ୍ତ, ଦାର୍ଶନିକ ଓ ପରିବ୍ରାଜକମାନେ ଆକୃଷ୍ଟ ହୋଇ ଧାଇଁ ଆସିଛନ୍ତି ଶ୍ରୀକ୍ଷେତ୍ରକୁ । ଶ୍ରୀକ୍ଷେତ୍ର ପାଲଟିଛି ତାଙ୍କର ତପୋଭୂଇଁ । ଯେପରି ରାମାୟଣରେ ରାମଙ୍କ କଥା, ଭାଗବତରେ କୃଷ୍ଣଙ୍କ କଥା, ବିଷ୍ଣୁପୁରାଣରେ ବିଷ୍ଣୁଙ୍କ କଥା ବର୍ଣ୍ଣନା କରାଯାଇଛି ସେହିପରି ବେଦବ୍ୟାସଙ୍କ ରଚିତ ସ୍କନ୍ଧପୁରାଣରେ ନୀଳାଦ୍ରିବିହାରୀ ଜଗନ୍ନାଥଙ୍କ କଥା ବର୍ଣ୍ଣନା କରାଯାଇଛି । ସେ ପରମ କାରୁଣିକ । ଚାରିଯୁଗରେ ତାଙ୍କର ଚାରି ଅବତାର ଗ୍ରହଣ କରିଛନ୍ତି । ଭକ୍ତମାନଙ୍କୁ ତାଙ୍କର ସ୍ଥିତି ବିଷୟରେ ଅବଗତ କରାଇଛନ୍ତି । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ନୀଳମାଧବ ରୂପରେ ପୃଥିବୀ ପୃଷ୍ଠରେ ପ୍ରକଟ ହୋଇ ତାଙ୍କର ଲୀଳା ଗାନ କରିଛନ୍ତି । କେତେକ ଭକ୍ତ ଶ୍ରୀଜଗନ୍ନାଥଙ୍କର ରୂପକୁ ପ୍ରତ୍ୟକ୍ଷରେ ଦେଖିଛନ୍ତି । ତାଙ୍କର କୃପା ଲଭିଛନ୍ତି ଓ ମୋକ୍ଷପ୍ରାପ୍ତି ହୋଇଛନ୍ତି । ସେହିଭଳି ଜଣେ ଭକ୍ତ ଦ୍ୱାଦଶ ଶତାବ୍ଦୀରେ, ଉତ୍କଳର ପ୍ରାଚୀ ନଦୀ ତଟ ଖୋର୍ଦ୍ଧା ଜିଲ୍ଲାର ବାଲିଅନ୍ତା ଥାନା ଅନ୍ତର୍ଗତ କେନ୍ଦୁବିଲ୍ୱ ଗ୍ରାମରେ, ଜନ୍ମଗ୍ରହଣ କରିଥିଲେ, ପବିତ୍ର ଅକ୍ଷୟ ତୃତୀୟା ତିଥିରେ । ତାଙ୍କର ନାମ ଥିଲା ଜୟଦେବ ଗୋସ୍ୱାମୀ । କମ୍

ବୟସରୁ ସେ ହୋଇଥିଲେ ପିତୃମାତୃ ଶୂନ୍ୟ । ପିତାଙ୍କ ମୃତ୍ୟୁ ପରେ ସେ ଶିକ୍ଷକ ରତ୍ନାକର ମିଶ୍ରଙ୍କ ଘରେ ରହି ତାଙ୍କ ପୁଅ ପରାଶର ସହିତ ଶିକ୍ଷା ଗ୍ରହଣ କରୁଥିଲେ । ସେ ଛୋଟବେଳୁ ମାଧବଙ୍କ ପୂଜା କରୁଥିଲେ । ମାତ୍ର ବାରବର୍ଷ ବୟସରେ ଅଡ଼ଶପୁରଠାରେ ତ୍ରିବେଣୀ ସଙ୍ଗମ ନିକଟରେ ଯେଉଁଠାରେ ପ୍ରାଚୀ, ମଣିକର୍ଣ୍ଣିକା ଓ କୁଶଭଦ୍ରା ନଦୀର ମିଳନସ୍ଥଳୀ ସେହିଠାରେ ମାଧବଙ୍କୁ କଠୋର ତପସ୍ୟା କରୁଥିଲେ । ରାଧାମାଧବ ସ୍ୱପ୍ନାଦେଶ କଲେ, ତୁ ଯା ମୋର ଗୁଣାବଳୀ ରଚନା କରିବୁ । ସେଇଠୁ ତପସ୍ୟା ଭଙ୍ଗ କରି ଜଗନ୍ନାଥ ମନ୍ଦିରରେ ଆସି ଉପାସନା କଲେ । ଏକ ନଦୀକୂଳରେ ପର୍ଣ୍ଣକୁଟୀରରେ ବସି କୋଟି କୈବଲ୍ୟନାଥ ଜଗନ୍ନାଥଙ୍କର ଦିବ୍ୟସତ୍ତା ଅନୁଭବ କରି ଗୀତଗୋବିନ୍ଦର ପଦାବଳୀ ରଚନା କଲେ । ପ୍ରଥମେ ତାଳପତ୍ରରେ ଲେଖନୀ ସାହାଯ୍ୟରେ ଅବ୍ୟକ୍ତ ଲୀଳାମୟଙ୍କର ଲୀଳା ବର୍ଣ୍ଣନା କଲେ ।

ସେହି ସମୟରେ ଦାକ୍ଷିଣାତ୍ୟର ଦେବଶର୍ମା ନାମକ ବିପ୍ର ଶ୍ରୀଜଗନ୍ନାଥଙ୍କ ଉପରେ ପ୍ରଗାଢ଼ ବିଶ୍ୱାସ କରି ଯାହା କିଛି କାର୍ଯ୍ୟ କରୁଥିଲେ ତାଙ୍କୁ ସ୍ମରଣ କରି କରୁଥିଲେ । ସେ ତାଙ୍କର ବିବାହ ଯୋଗ୍ୟା କନ୍ୟା ପଦ୍ମାବତୀଙ୍କୁ ମଧ୍ୟ ଜଗନ୍ନାଥଙ୍କ ସେବା ପାଇଁ ଉତ୍ସର୍ଗ କରିଥିଲେ କିନ୍ତୁ ପରବର୍ତ୍ତୀ ସମୟରେ ଜଗନ୍ନାଥଙ୍କ ସ୍ୱପ୍ନାଦେଶ ପାଇ ନିଜ କନ୍ୟା ପଦ୍ମାବତୀଙ୍କୁ ଜୟଦେବଙ୍କୁ ଅର୍ପଣ କରିଥିଲେ । ଗଭୀର ପ୍ରେମରେ ମଗ୍ନ ଦମ୍ପତି ନୃତ୍ୟଗୀତରେ କୃଷ୍ଣାର୍ଚ୍ଚନ କରୁଥିଲେ କାରଣ ପଦ୍ମାବତୀ ନୃତ୍ୟ ପ୍ରବୀଣ ଥିଲେ ଏବଂ ଦାକ୍ଷିଣାତ୍ୟର ତିନୋଟି ମନ୍ଦିରରେ ନୃତ୍ୟାଙ୍ଗନା ପଦ୍ମାବତୀର ନାମ ଶିଳାଲେଖରେ ଉଲ୍ଲେଖ ଅଛି । ପ୍ରତ୍ୟହ ସକାଳୁ ଜୟଦେବ ଗୀତଗୋବିନ୍ଦର ମାଧୁର୍ଯ୍ୟଭରା ପଦ୍ୟାବଳୀକୁ ରଚନା କରୁଥିଲେ । ସେ ଥିଲେ ଜଗନ୍ନାଥଙ୍କର ହୃଦୟର ଆଶୀର୍ବାଦ । ସେ ଜଗନ୍ନାଥଙ୍କୁ କୃଷ୍ଣ ରୂପରେ ଆରାଧନା କରୁଥିଲେ । ତେଣୁ ଶ୍ରୀଜଗନ୍ନାଥଙ୍କ ଲୀଳାକୁ କୃଷ୍ଣଙ୍କ ମାଧ୍ୟମରେ ଦେଖାଇଛନ୍ତି ଗୀତଗୋବିନ୍ଦରେ । ଗୀତଗୋବିନ୍ଦ ଥିଲା ତାଙ୍କର ଅତ୍ୟନ୍ତ ଆତ୍ମୀୟ । ଦିନେ ସକାଳୁ ଗୀତଗୋବିନ୍ଦର ସବୁଠାରୁ ଲୋକପ୍ରିୟ ପଦରାଜି ଅବତାରଣା କରିବାକୁ ଯାଇ ଲେଖିଛନ୍ତି ଯୁଗେ ଯୁଗେ ଭଗବାନ ଭକ୍ତର ଅଧୀନ ତେଣୁ ଶ୍ରୀକୃଷ୍ଣ ତାଙ୍କ ପ୍ରାଣପ୍ରିୟା ରାଧାଙ୍କର ପ୍ରୀତିଭିକ୍ଷା କରିବା ସମୟରେ ପଦପଙ୍କଜ ସ୍ପର୍ଶ କରିବା ବିଷୟ ବର୍ଣ୍ଣନା କରିଛନ୍ତି ତାଙ୍କ କୃତିରେ –ସ୍ମରଗରଳ ଖଣ୍ଡନଂ ମମ ଶିରସୀ ମଣ୍ଡନଂ । ଦେହି ପଦ ପଲ୍ଲବ ମୁଦାରଂ । ଏତିକି ଲେଖିଲା ପରେ ଭାବିଲେ କିଛି ଭୁଲ ଲେଖିଦେଲେ କି! କାରଣ କୃଷ୍ଣ ପ୍ରୀତିଭିକ୍ଷା ସମୟରେ ଯେ ରାଧାଙ୍କର ପଦପଙ୍କଜ ଭିକ୍ଷା କରିଛନ୍ତି ସେ କଥାକୁ ଜୟଦେବ ଗ୍ରହଣ କରିନାହାନ୍ତି । ମୋ ପ୍ରଭୁ ରାଧାଙ୍କର ପାଦ ଧରିବେ ନାହିଁ ଏହି ଅଭିମାନରେ ସେ ତାଙ୍କର ପଦ ପୂର୍ଣ୍ଣ ନ କରି ତାଳପତ୍ର ଲେଖନୀକୁ ଥୋଇଦେଇ ସ୍ନାନ କରିବାକୁ ନଈକୁ ଯାଇଛନ୍ତି । ନଈରୁ ଫେରିଲାବେଳକୁ ନିଜେ ସ୍ୱୟଂ ଜଗନ୍ନାଥ ଜୟଦେବଙ୍କ ମନକଥା ବୁଝିପାରି ଜୟଦେବ ରୂପରେ ଆସି ପଦ ପୂର୍ଣ୍ଣକରି, ପଦ୍ମାବତୀଙ୍କଠାରୁ ଭୋଜନ ଗ୍ରହଣ କରି ଚାଲିଯାଇଛନ୍ତି ।

କିଛି ସମୟ ପରେ ଜୟଦେବ ଫେରି ପଦ୍ମାବତୀଙ୍କୁ ଖାଇବାକୁ ମାଗିଛନ୍ତି କିନ୍ତୁ ଯେତେବେଳେ ପଦ୍ମାବତୀ କହିଲେ ସ୍ୱାମୀ ଆପଣ ତ ଆସି ପଦ ପୂରଣ କରି ମୋ ହାତରୁ ଖାଦ୍ୟ ଗ୍ରହଣ କଲେ । ଏକଥା ଶୁଣି ଜୟଦେବ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ତାଳପତ୍ର ଦେଖି ଅଭିଭୂତ ହୋଇଗଲେ ସେ ପଦ ଯେଉଁଠୁ ଛାଡିଥିଲେ ଠିକ୍ ସେଇଠୁ ଶ୍ରୀହରି ପଦ ପୂରଣ କରି ଦେଇଛନ୍ତି ।

ପଦ୍ମାବତୀଙ୍କ ହାତରୁ ଭୋଜନ ମଧ୍ୟ ଗ୍ରହଣ କରିଛନ୍ତି । ଭାବ ବିହ୍ୱଳ ହୋଇ କାନ୍ଦି ପକାଇଲେ ଜୟଦେବ । କହିଲେ ତୁମେ ସ୍ୱଚକ୍ଷୁରେ ଜଗନ୍ନାଥଙ୍କୁ ଦର୍ଶନ କରି ଧନ୍ୟ ହୋଇଗଲ ପଦ୍ମା । ତୁମର ସକଳ କାମନା ଚରିତାର୍ଥ ହୋଇଛି । ଗୀତଗୋବିନ୍ଦ ରଚନା

ଶେଷ ହେବା ପରେ ଜୟଦେବ ଏହାକୁ ଶ୍ରୀଜଗନ୍ନାଥଙ୍କ ନୈବେଦ୍ୟ ରୂପେ ଅର୍ପଣ କରି ନିଜ ଜୀବନକୁ ଧନ୍ୟ ମନେ କରିଥିଲେ । ଏହା ହିଁ ଭକ୍ତ ଓ ଭଗବାନଙ୍କର ସମ୍ପର୍କ । ତାଙ୍କ ରଚିତ ଦଶାବତାର ଶ୍ଳୋକ ଏକ ଅମୂଲ୍ୟ ସମ୍ପଦ । ତାଙ୍କ ରଚନାରେ ସେ ଶ୍ରୀକୃଷ୍ଣ, ମାଧବ, ବାସୁଦେବ, ଜଗଦୀଶ, କେଶବ, ପୁରୁଷୋତ୍ତମ, ହରି ମୁରାରୀ ଆଦିତ୍ୟ ଭିନ୍ନ ଭିନ୍ନ ନାମ ରଚନା କରି ସବୁ ଧର୍ମର ସମନ୍ୱୟ ଆଣି ପାରିଛନ୍ତି ଏହାପରେ ସେ ପ୍ରତ୍ୟହ ପତ୍ନୀଙ୍କ ସହ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ତନ୍ମୟ ହୋଇ ଶ୍ରୀଗୀତଗୋବିନ୍ଦ ଗାନ କରି ନୃତ୍ୟ କରିବାକୁ ଲାଗିଲେ ।

ଭକ୍ତାଧୀନ ଜଗନ୍ନାଥ ଜୟଦେବଙ୍କର, ଦାସିଆ ବାଉରୀର, ରଘୁ ଅରକ୍ଷିତର, ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କର । ସେ ଦର୍ଶନ ଦେଇଛନ୍ତି ରାମ ରୂପରେ, କୃଷ୍ଣ ରୂପରେ, ନୃସିଂହ, ବାମନ ରୂପରେ । ଶ୍ରୀଜୟଦେବଙ୍କୁ ଦର୍ଶନ ଦେଇଛନ୍ତି ଶ୍ରୀକୃଷ୍ଣ ରୂପରେ ତେଣୁ ଗୀତଗୋବିନ୍ଦ ପ୍ରଭୁ ଶୁଣନ୍ତି ନାହିଁ ପରନ୍ତୁ ଗୀତଗୋବିନ୍ଦ ଖଣ୍ଡୁଆ ଲାଗି ନ ହେଲେ ପ୍ରଭୁ ନିଦ୍ରା ଯାଆନ୍ତି ନାହିଁ । ଜୟଦେବଙ୍କ ପୃଥିବୀର କ୍ଷୁଦ୍ରତମ ମହାକାବ୍ୟ ଗୀତଗୋବିନ୍ଦରେ ଅଛି ବାରଟି ସର୍ଗ, ଚବିଶଟି ଛାନ୍ଦ ଓ ୭୨ ପଦର ସମାବିଷ୍ଟ । କାନ୍ତ କୋମଳ ପଦାବଳୀ ଅନୁପ୍ରାସ ଅଳଂକାର, ଯମକ, ଉପମା, ଉପମେୟ ଓ ଉପଧା ମିଳନର ଚମତ୍କାର ରଚନା ଶୈଳୀ । ଭକ୍ତି ଓ ଶୃଙ୍ଗାର ରସରେ ଲିଖିତ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ଅତି ପ୍ରିୟ । ଯେଉଁ ଗୀତଗୋବିନ୍ଦ ଶୁଣିବାକୁ ଜଗନ୍ନାଥ ବାଇଗଣ କିଆରିକୁ ପଶି କ୍ଷତାକ୍ତ ହୋଇଥିଲେ । ପ୍ରଭୁ ଗୀତଗୋବିନ୍ଦ ଶୁଣିଲେ ନିଦ୍ରା ଯାଆନ୍ତି , ଗୀତଗୋବିନ୍ଦ ଖଣ୍ଡୁଆ ପିନ୍ଧନ୍ତି । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ଦଶାବତାରକୁ ଅତ୍ୟନ୍ତ ଚମତ୍କାର ଭାବରେ ରୂପ ଦେଇଛନ୍ତି ଜୟଦେବ । ସୃଷ୍ଟିର ରକ୍ଷା ପାଇଁ ଭଗବାନ ବିଭିନ୍ନ ସମୟରେ ବିଭିନ୍ନ ଅବତାର ଗ୍ରହଣ କରିଛନ୍ତି । ମତ୍ସ୍ୟାବତାରଠାରୁ କଳ୍କୀ ଅବତାର ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ସୃଷ୍ଟିରକ୍ଷା କରିଛନ୍ତି । ଶ୍ରୀଜଗନ୍ନାଥ ପରମାତ୍ମା, ସେ ପ୍ରକୃତି, ସେ ପରଂବ୍ରହ୍ମ ତାଙ୍କ ସହ ଜୀବାତ୍ମାର ମିଳନ ହିଁ ଗୀତଗୋବିନ୍ଦର ବିଷୟବସ୍ତୁ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ବେଶମାନଙ୍କ ମଧ୍ୟରେ ବଡସିଂହାର ବେଶ ସର୍ବୋତ୍ତମ । ଏହି ସମୟରେ ଚାଙ୍ଗଡା ସେବକମାନେ ଗୀତଗୋବିନ୍ଦ ଶ୍ଳୋକ ଥିବା ଖଣ୍ଡୁଆ ପାଟ ପିନ୍ଧାଇ ଥାଆନ୍ତି । ଏବେ ରାଜ୍ୟରେ ତଥା ରାଜ୍ୟ ବାହାରେ ଥିବା ବହୁ ଜଗନ୍ନାଥ ମନ୍ଦିରରେ ଦଶାବତାର ଗାନ କରାଯାଏ । ଜୟଦେବ କେନ୍ଦୁବିଲ୍ୱରୁ ପ୍ରାୟ ୧୫ କିଲୋମିଟରରେ ଥିବା ପ୍ରାଚୀ ତୀରସ୍ଥ ମାଧବ ମନ୍ଦିରକୁ ନିୟମିତ ଯାଇ ଦଶାବତାର ଗାନ କରୁଥିଲେ । ସେ ଥିଲେ ଜଗନ୍ନାଥଙ୍କ ପ୍ରାଣ । ତାଙ୍କର କବିତ୍ୱ ଜଗନ୍ନାଥ କୃପାର ପରିପ୍ରକାଶ । ଭକ୍ତ କବିଙ୍କର ଏହି ଭକ୍ତିକାବ୍ୟ ଦ୍ୱାଦଶ ଶତାବ୍ଦୀର ସଂସ୍କୃତ ସାହିତ୍ୟର ଏକ ଅମୂଲ୍ୟ ଗ୍ରନ୍ଥ ହେଲେ ମଧ୍ୟ ସହଜ ଓ ବୋଧଗମ୍ୟ । ପିତା ଭୋଜଦେବ ମାତା ବାମାଦେବୀଙ୍କର ସୁଯୋଗ୍ୟ ସନ୍ତାନ ଜୟଦେବ କେବଳ ଉତ୍କଳରେ ନୁହନ୍ତି ଭାରତର ସୁଯୋଗ୍ୟ ସନ୍ତାନ । ତାଙ୍କର ଅମର ଲେଖନୀରୁ ସୃଷ୍ଟି ଅମୃତଧାରା 'ଗୀତଗୋବିନ୍ଦ' ପାଇଁ ସେ ସଦାକାଳ ଅମର ରହିବେ ।

ପ୍ଲଟ୍ ନଂ- ୨୯୩/୬୦୦
ମାର୍ଫତ-ଅରକ୍ଷିତ ପାଣିଗ୍ରାହୀ
ଗଙ୍ଗନଗର ସ୍କୋୟାର, ପୋ: ସୂର୍ଯ୍ୟନଗର
ଭୁବନେଶ୍ୱର-୭୫୧୦୦୩



# ଓଡ଼ିଶା ଲୋକକଳାର ଭବିଷ୍ୟତ

ହର୍ଷବର୍ଦ୍ଧନ ଉଦଗାତା

ଓଡିଆ ଭାଷା ଯେମିତି ପୁରାତନ, ସେମିତି ଉତ୍କଳର ଲୋକକଳା, ଲୋକସଙ୍ଗୀତ ଓ ଲୋକନୃତ୍ୟ ମଧ୍ୟ ପୁରାତନ । ସ୍ୱତନ୍ତ୍ର ଓ ଓଡିଶାର ଅନ୍ୟନାମ ଉତ୍କଳ । ଓଡିଶାର ଲୋକନୃତ୍ୟ ଓ ଲୋକସଙ୍ଗୀତ ଉଭୟ ପରସ୍ପର ପ୍ରତି ଜଡିତ ଓ ନିର୍ଭରଶୀଳ, ଯେମିତିକି ଓଡିଶୀ ନୃତ୍ୟ ଓଡିଶୀ ସଙ୍ଗୀତ ବିନା ଅଭିନୀତ ହୋଇପାରିବ ନାହିଁ । ଓଡିଶୀ ନୃତ୍ୟକୁ ଶାସ୍ତ୍ରୀୟ ନୃତ୍ୟର ମାନ୍ୟତା ମିଳିଥିଲେବି, ଓଡିଶୀ ସଙ୍ଗୀତକୁ ଏ ପର୍ଯ୍ୟନ୍ତ ଶାସ୍ତ୍ରୀୟ ସଙ୍ଗୀତର ମାନ୍ୟତା ମିଳିପାରିନାହିଁ ।

ଓଡିଶାର ପ୍ରତି ପ୍ରାନ୍ତରେ ବିଭିନ୍ନ ପ୍ରକାରର ଲୋକନୃତ୍ୟର ପ୍ରଚଳନ ଅଛି ଯେପରିକି, ଗୋଟିପୁଅ ନାଚ , ପୁରୀ ଜିଲ୍ଲାର ରଘୁରାଜପୁର ଗ୍ରାମରୁ ସୃଷ୍ଟି ହୋଇଛି । ଗଞ୍ଜାମ ଜିଲ୍ଲାର ଲୋକନୃତ୍ୟଗୁଡିକ ହେଲା – ରଣପା, ଦାସ କାଠିଆ, ଦଣ୍ଡନାଚ, ଭାରତ ଲୀଳା ବା ଦୁଆରି ନାଚ, ପ୍ରହଲ୍ଲାଦ ନାଟ,ଚଇତି ଘୋଡା ନାଚ, ଯୋଡିଶଙ୍ଖ, ବାଘନାଚ ଇତ୍ୟାଦି । ସମ୍ବଲପୁରରେ ଡାଲଖାଇ ପରି ଲୋକନୃତ୍ୟ ଥିଲାବେଳେ, କଳାହାଣ୍ଡିର ଘୁମୁରା ନାଚ ବିଶ୍ୱପ୍ରସିଦ୍ଧ । ସେମିତି ମୟୂରଭଞ୍ଜ । ଛଉନୃତ୍ୟ ସବୁଠାରୁ ଅନନ୍ୟ । ଏତଦ୍ ବ୍ୟତୀତ, ଓଡିଶାର ପୁରପଲ୍ଲୀରେ ଆମେ ଦେଖିଥାଉ ପାଲା, ଖଞ୍ଜଣୀ ଭଜନ, ଘୁଡୁକି ଗୀତ, କେନ୍ଦରା ଗୀତ, କାଠି ନାଚ, କଣ୍ଢେଇ ନାଚ, ଇତ୍ୟାଦି ।

ଓଡିଶୀ ସଙ୍ଗୀତ ଓଡିଶାର ପରିଚୟ । ସେହିପରି ଛାନ୍ଦ, ଚମ୍ପୂ, ଚଉତିଶା ଆଦି ଗାୟନ ପଦ୍ଧତି ଅନୁସରଣ କରି ଅନେକ ଭଜନ ଜଣାଣ, ପଲ୍ଲୀ ସଙ୍ଗୀତ, ସୁଗମ ସଙ୍ଗୀତ ପୁରାତନ କଣ୍ଠଶିଳ୍ପୀମାନେ ଗାଇଛନ୍ତି । ସେହି ସବୁ ସଙ୍ଗୀତର ହାତ ଗଣତି କେତେକ କଣ୍ଠଶିଳ୍ପୀ ହେଲେ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ, ସଙ୍ଗୀତ ସୁଧାକର ବାଳକୃଷ୍ଣ ଦାଶ, ପଦ୍ମଶ୍ରୀ ଶ୍ୟାମାମଣୀ ଦେବୀ, ଭଜନ ସମ୍ରାଟ୍ ଭିକାରୀ ବଳ ।

ନୃତ୍ୟ ସଙ୍ଗୀତ ପରି ବାନ୍ଧକଳାରେ ମଧ୍ୟ ଓଡିଶା ତା ପରିଚୟ ସୃଷ୍ଟି କରିଛି । ସମ୍ବଲପୁରୀ, ସୋନ୍ ପୁରୀ, ବ୍ରହ୍ମପୁରୀ, ବମକେଇ, ଖଣ୍ଡୁଆ ଆଦି ପାଟର ବାନ୍ଧକଳା ପାଇଁ ଓଡିଶା ସାରା ବିଶ୍ୱରେ ପ୍ରସିଦ୍ଧ । ଇତିହାସ କହେ ଓଡିଶାର ସାଧବପୁଅମାନେ କାର୍ତ୍ତିକ ପୂର୍ଣ୍ଣିମାରେ ସୁଦୁର ଜାଭା, ବାଲି, ବୋର୍ଣ୍ଣିଓ ଦ୍ୱୀପକୁ ବୋଇତରେ ବଣିଜ ବେପାର କରି ଗଲାବେଳେ ଚାଉଳ, ପାନ, ଗୁଆ, ଓ ଶାଢ଼ୀ ନେଇକି ଯାଉଥିଲେ ।

ରଘୁରାଜପୁରର ପଟ୍ଟଚିତ୍ର ଏକ ଅନନ୍ୟ ଚିତ୍ରକଳାର ବୈଶିଷ୍ଟ୍ୟ । ମଠାକନାରେ ମଣ୍ଡଦେଇ ଶୁଖେଇଲା ପରେ ବିଭିନ୍ନ ପ୍ରାକୃତିକ ଉପାଦାନରୁ ପ୍ରସ୍ତୁତ ରଙ୍ଗକୁ ଦେଇ ଚିତ୍ର ଅଙ୍କା ଯାଇଥାଏ ଯେଉଁଥିରେ କି ଓଡିଶାର ଲୋକକଥା ତଥା ହିନ୍ଦୁପୁରାଣ ବର୍ଣ୍ଣିତ କଥାବସ୍ତୁ ସବୁ ଚିତ୍ର ଆକରରେ ଦର୍ଶାଇ ଦିଆଯାଇଥାଏ । ପ୍ରାୟତଃ ବିଷ୍ଣୁଙ୍କର ଦଶାବତାର, କୃଷ୍ଣଲୀଳା, ଜଗନ୍ନାଥ ସଂସ୍କୃତି ଉପରେ ପର୍ଯ୍ୟବସିତ ଚିତ୍ରପଟ୍ଟଗୁଡିକ ଦେଶ ବିଦେଶରେ ଆଦୃତି ଲାଭ କରିଛି ।

ଅଶୀଦଶକ ପୂର୍ବ ପର୍ଯ୍ୟନ୍ତ, ଯେବେ ଘରେ ଘରେ ଟେଲିଭିଜନର ବ୍ୟବହାର ନଥିଲା, ସେତେବେଳେ ଯାନିଯାତ୍ରା, ପର୍ବପର୍ବାଣି, ପୂଜା ମହୋତ୍ସବରେ ପାଲା,

ଦାସକାଠିଆ, ଘୁଡୁକି ନାଚ, କଣ୍ଢେଇ ନାଚ ଆଦି ଗାଁ ଗହଳି କଣ ସହରମାନଙ୍କରେ ବି ଦେଖିବାକୁ ମିଳୁଥିଲା । ଶହ ଶହ ସଂଖ୍ୟାରେ ଲୋକମାନେ ୧୦-୧୨ ଘଣ୍ଟା ଧରି ଚାଲୁଥିବା ଦୁଆରି ନାଚ (ଭାରତଲୀଳା/ସୁଭଦ୍ରା ପରିଣୟ) ବା ପ୍ରହଲ୍ଲାଦ ନାଟ ଦେଖୁଥିଲେ । କଣ୍ଢେଇ ନାଚ ଓ ବାଇସ୍କୋପ ରାସ୍ତାଘାଟରେ ଜନସଚେତନତା ସୃଷ୍ଟି କରୁଥିଲା । ଗାଁ ଗହଳିରେ ଭାଗବତ ଟୁଙ୍ଗୀଗୁଡିକରେ ପ୍ରତି ସନ୍ଧ୍ୟାରେ ଭାଗବତ ପାଠ ସହିତ ଖଞ୍ଜଣୀ ଭଜନ, ପୁରାତନ ରଚନାରୁ ଚମ୍ପୂ, ଛାନ୍ଦ,ଚଉତିଶା ଗାୟନ କରାଯାଉଥିଲା । ମନୋରଞ୍ଜନ କହିଲେ ସେତେବେଳେ ଲୋକେ ଏହିସବୁ ଲୋକନୃତ୍ୟ ଓ ଲୋକସଙ୍ଗୀତକୁ ହିଁ ବୁଝୁଥିଲେ । କଳା ବଞ୍ଚୁଥିଲା, କଳାକାର ବି ବଞ୍ଚୁଥିଲେ ।

ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କର ନିର୍ଦ୍ଦେଶ କ୍ରମେ, ସଂସ୍କୃତି ବିଭାଗ ତା'ର ସ୍ୱତନ୍ତ୍ର ସର୍ବେକ୍ଷଣ ମାଧ୍ୟମରେ ଓଡିଶାର କୋଣ ଅନୁକୋଣରୁ ଅତିକମ୍‌ରେ ୪୫୯ ଗୋଟି ବିଲୁପ୍ତପ୍ରାୟ ଲୋକକଳା ଚିହ୍ନଟ କରିଛନ୍ତି । ପ୍ରାୟ ୭୫୦୦ ପାରମ୍ପରିକ ଲୋକକଳା ଦଳର ୩ ଲକ୍ଷରୁ ଊର୍ଦ୍ଧ୍ୱ କଳାକାରଙ୍କର ନାମକୁ ତାଲିକାଭୁକ୍ତ କରାଯାଇଛି । ସେମାନଙ୍କ ଭିତରୁ ୪୦୦୦ରୁ ଅଧିକ ଅଗ୍ରଣୀ କଳାକାରମାନଙ୍କୁ ଭତ୍ତା ପ୍ରଦାନ କରାଯାଉଛି । ସେହିପରି ଲୁପ୍ତ ପ୍ରାୟ ଭାଗବତ ଟୁଙ୍ଗି ସବୁକୁ ଗାଁ ଗହଳିରେ ପୁନରୁଦ୍ଧାର ପାଇଁ ଆର୍ଥିକ ସହାୟତା ପ୍ରଦାନ କରାଯାଇଛି ।

ବର୍ତ୍ତମାନ ଯୁଗର ପରିବର୍ତ୍ତନ ଘଟିଛି, ସିନେମା ଓ ଘରେ ଘରେ ଟେଲିଭିଜନ ମନୋରଞ୍ଜନର ମାଧ୍ୟମ ହୋଇଛି । ଆଧୁନିକ ସଙ୍ଗୀତ ନୃତ୍ୟ ପ୍ରତି ଯୁବଗୋଷ୍ଠୀ କ୍ରମଶଃ ଆକୃଷ୍ଟ ହେଉଛନ୍ତି ଏବଂ ଲୋକମାନଙ୍କର ରୁଚିରେ ମଧ୍ୟ ପରିବର୍ତ୍ତନ ଦେଖାଦେଲାଣି । ପୂଜା ପେଣ୍ଡାଲମାନଙ୍କରେ ମେଲୋଡି ଓ ଆଧୁନିକ ସଙ୍ଗୀତର ତାଳେ ତାଳେ ଉଦ୍ଦାମ ନୃତ୍ୟକୁ ଲୋକେ ଦେଖିବାକୁ ପସନ୍ଦ କଲେଣି, ଅପେରା ପେଣ୍ଡାଲରେ ମଧ୍ୟ ସେହିପରି ଆଧୁନିକ ବା ପାଶ୍ଚାତ୍ୟ ନୃତ୍ୟ ସଙ୍ଗୀତର ଅନୁପ୍ରବେଶ ଘଟିସାରିଲାଣି । ପ୍ରକାରନ୍ତରେ କହିବାକୁ ଗଲେ, ଆମର ପୁରାତନ ଲୋକ କଳା ବର୍ତ୍ତମାନ ବିପର୍ଯ୍ୟୟ ମୁଖୀ । ପାଲା କିମ୍ବା ଦାସକାଠିଆ ହେଲେ ସେଠାରେ ଦର୍ଶକଙ୍କ ସଂଖ୍ୟା ଅତି ନଗଣ୍ୟ ।

ସରସ୍ୱତୀଙ୍କର ବରପୁତ୍ରମାନେ ଲକ୍ଷ୍ମୀଛଡା ହେଲାପରି ଓଡିଶାର କଳାକାର ଦାରିଦ୍ର୍ୟର କଷାଘାତରେ ଧରାଶାୟୀ, ପୁରାତନ ଲୋକକଳା ଓ ନୃତ୍ୟକୁ ଜୀବିକା ଭାବେ ଗ୍ରହଣ କରିନେଇଥିବା କଳାକାରବୃନ୍ଦ କ୍ଷୁଧାରେ ଜର୍ଜରିତ । ପେସା ଖୋଜୁ ଖୋଜୁ ନିଶା ବଳି ପଡିଗଲାଣି । ନିଜ ପେଟପାଟଣା କଥାଚିନ୍ତା କରି କଳାକାର ତାର ପାରମ୍ପାରିକ ନୃତ୍ୟ ସଙ୍ଗୀତକୁ ଛାଡି ଆଧୁନିକତା ମଧ୍ୟକୁ ପ୍ରବେଶ କଲାଣି, ଫଳରେ ଓଡିଶାର ଲୋକକଳା ବିଲୁପ୍ତ ହେବାକୁ ବସିଲାଣି ।

ରାଜଧାନୀ ଭୁବନେଶ୍ୱରରେ ହେଉ ବା ଜିଲ୍ଲାସଦର ମହକୁମାରେ ସଂସ୍କୃତି ବିଭାଗ ଦ୍ୱାରା ପରିଚାଳିତ ଉତ୍ସବମାନଙ୍କରେ ହେଉ ବା ଅନ୍ୟ ରାଜ୍ୟ ବା ଦେଶରେ ପ୍ରବାସୀ ଓଡିଆମାନେ ଏହି ଲୋକନୃତ୍ୟ, ଲୋକସଙ୍ଗୀତକୁ ପ୍ରଚାର ପ୍ରସାର କରି ନିଜର ଓଡିଆମୀ ଜାତୀୟତାକୁ ଉଜ୍ଜୀବିତ ରଖିଛନ୍ତି । କିନ୍ତୁ ବର୍ଷର ଅନ୍ୟ ସମୟରେ ଏହି କଳାକାରମାନେ କିପରି ଚଳିବେ କିପରି କଳା ସାଧନ କରିବେ ବା କଳାରେ ଉତ୍କର୍ଷତା ଆଣିବେ ସେ ପ୍ରତି କାହାର ଶୋଚନା ନଥାଏ କି ପୃଷ୍ଠପୋଷକତା ନଥାଏ ।

ସାହିତ୍ୟ, ନୃତ୍ୟ ସଙ୍ଗୀତ ଆଦି କଳାରେ ଉତ୍କର୍ଷତା ପ୍ରତିପାଦନ କରିଥିବା ଲେଖକ, କଳାକାର, ଗବେଷକ ଓ ବିଶାରଦମାନଙ୍କୁ ରାଜ୍ୟ ସ୍ତରରେ ଓଡିଶା ସାହିତ୍ୟ ଏକାଡେମୀ, ଓଡିଶା ଲଳିତ କଳା ଏକାଡେମୀ, ଓଡିଶା ସଙ୍ଗୀତ ନାଟକ ଏକାଡେମୀ ପରି ସରକାରୀ ଅନୁଷ୍ଠାନମାନ ଅଛନ୍ତି, ଯେଉଁମାନେ କି ଶୀର୍ଷ ସ୍ଥାନର କଳାକାରମାନଙ୍କୁ ଚିହ୍ନଟ କରି ସମ୍ମାନିତ କରନ୍ତି ଓ କଳା ସାଧନ ପାଇଁ ଉତ୍ସାହିତ କରିଥାନ୍ତି । ଓଡିଆ ଭାଷାର ଅଭିବୃଦ୍ଧି ପାଇଁ, ଓଡିଆ ଭାଷା ଓ ସାହିତ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାର ନିଷ୍ପତ୍ତି ନିଆଯାଇଛି । ଓଡିଆ ଭାଷା ସାହିତ୍ୟର

ସମସ୍ତ ମହତ୍ୱପୂର୍ଣ୍ଣ ଓ ଐତିହାସିକ ଗ୍ରନ୍ଥଗୁଡିକର Digitization କରାଯିବା ସହିତ ଏସବୁ କିପରି Internetରେ ଉପଲବ୍ଧ ହେଇପାରିବ, ସେଥିପାଇଁ Odia Virtual Academy ମଧ୍ୟ ପ୍ରତିଷ୍ଠା କରାଯାଇଛି ।

ବର୍ତ୍ତମାନ ଅନୁଚିନ୍ତାର ବିଷୟ ହେଲା, ଆମ ଲୋକ କଳା, ଲୋକ ସଙ୍ଗୀତ ବା ଲୋକ ନୃତ୍ୟ, ଯାହା କି ଉତ୍କଳର ପ୍ରାଣ, ପରିଚୟ ଓ ଗୌରବ, ସେସବୁ ଉତ୍କଳ ମାଟିରେ ତିଷ୍ଠି ରହିବା ଆବଶ୍ୟକ ନା ଯୁବ ପିଢ଼ିର ରୁଚି ଅନୁଯାୟୀ ଆଧୁନିକ ସଙ୍ଗୀତ ନୃତ୍ୟ ଆଦିର ପ୍ରସାର ହେବା ଆବଶ୍ୟକ । ଆମକୁ ମନେ ରଖିବାକୁ ହେବ ଯେ, ଆଧୁନିକ ସଙ୍ଗୀତ ନୃତ୍ୟ ଆମ ଓଡିଆଙ୍କ ମୌଳିକ ସଂସ୍କୃତି ନୁହେଁ । ଆଧୁନିକତାର ପ୍ରଭାବରେ କ୍ରମେ ଆମେ ଓଡିଆ, ଓଡିଆ କହିବା ଭୁଲି, ଓଡିଆ ସଂସ୍କୃତି ଭୁଲି, ମହାସମୁଦ୍ରରେ ଲୀନ ହୋଇଯିବା, ଓଡିଆ ତା'ର ନିଜସ୍ ମୌଳିକତା ହରାଇ ବସିବ । ଯେଉଁ ରାଜ୍ୟ ଦିନେ ଓଡିଆ ଭାଷାକୁ ଆଧାର କରି, ଓଡିଆ ଭାଷା ଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଭାବରେ ପୁନର୍ଗଠିତ ହେଇଥିଲା ସେ ରାଜ୍ୟ ତା'ର ନିଜସ୍ୱ ସ୍ୱାଭିମାନ ଓ ଅସ୍ମିତା ହରାଇ ବସିବ । ତେଣୁ ଆମର ପୁରାତନ ନୃତ୍ୟ ସଙ୍ଗୀତକୁ ବାଧ୍ୟତାମୂଳକ ଭାବରେ ଆନୁଷ୍ଠାନିକ ପୂଜା, ଉତ୍ସବମାନଙ୍କରେ ଅନ୍ତର୍ଭୁକ୍ତ କରାଯାଉ ଏବଂ ରେଡିଓ ଓ ଟେଲିଭିଜନର ବିଭିନ୍ନ channelରେ ପ୍ରସାର କରାଯାଉ । ନୂତନ ଯୁବପିଢି ସେସବୁ ଦର୍ଶନ ଓ ଉପଭୋଗର ସୁଯୋଗ ପାଆନ୍ତୁ । ସେପରି ଲୋକକଳାର କଳାକାରମାନଙ୍କୁ ପୃଷ୍ଠପୋଷକତା ଦେବାପାଇଁ ସରକାରୀ ଓ ବେସରକାରୀ ସ୍ତରରେ ପ୍ରଚେଷ୍ଟା କରାଯାଉ, ଆର୍ଥିକ ସହାୟତା ସହିତ ସେମାନଙ୍କୁ ସମ୍ମାନିତ କରିବାର ଅବକାଶ ସୃଷ୍ଟି କରାଯାଉ । ପାରମ୍ପରିକ ଲୋକକଳାକୁ ବଞ୍ଚେଇ ରଖିବାକୁ ହେଲେ କେବଳ ସରକାରୀ ସ୍ତରରେ ନୁହେଁ ବରଂ ବେସରକାରୀ ସଂସ୍ଥାମାନେ, Corporate Sectorମାନେ ମଧ୍ୟ ହାତ ମିଳେଇବାର ଆବଶ୍ୟକତା ରହିଛି । ଆଞ୍ଚଳିକ ସ୍ତରରେ ସେମାନଙ୍କୁ ପୃଷ୍ଠପୋଷକତା ଦେବା ସହିତ, ଯାନିଯାତ୍ରା, ମେଳଣ, ମହୋତ୍ସବ ଅବସରରେ ପ୍ରତିଯୋଗିତା, ପ୍ରଦର୍ଶନ ଇତ୍ୟାଦି ପାଇଁ କଳାକାରମାନଙ୍କୁ ସୁଯୋଗ ଦେବା ଆବଶ୍ୟକ । ଯାହାଦ୍ୱାରା ରେଡିଓ ଓ ଟେଲିଭିଜନ Channelମାନଙ୍କରେ ଲୋକକଳାଭିତ୍ତିକ କାର୍ଯ୍ୟକ୍ରମମାନ ପ୍ରଚାର ପ୍ରସାର କରିବା ଫଳରେ ପାରମ୍ପରିକ ଲୋକକଳାଗୁଡିକୁ ଜୀବିକା ଭାବେ ଗ୍ରହଣ କରି କଳାକାରମାନେ ବଞ୍ଚିପାରିବେ ।

ବନ ସଂରକ୍ଷକ, ଅରଣ୍ୟ ଭବନ
ଭୁବନେଶ୍ୱର



# ସ୍ୱାଧୀନତା ସଂଗ୍ରାମର ଭିନ୍ନ ଏକ ବହ୍ନିଶିଖା: ଚନ୍ଦନ ହଜୁରୀ

**କମଳିନୀ ମଲ୍ଲିକ**

ଏବେ ବି ଓଡିଶାର ପୁରପଲ୍ଲୀ ଓ ସହରର ସ୍ତ୍ରୀଲୋକମାନେ ସେହିଭଳି ପ୍ରସଙ୍ଗଟିଏ ଆଲୋଚିତ ହେଉଥିଲେ କଥା ଛଳରେ ସେମାନେ କହି ପକାନ୍ତି –

ନଈରେ ବାଳିଆ ଚହଟିଲା

ପିନ୍ଧି ଲୋ ରାଣ୍ଡ ଶଙ୍ଖା ସିନ୍ଦୁର

ଚାଖି ଖୁଣ୍ଟିଆ ଲେଉଟିଲା ।



କେଉଁ କାଳରୁ ଗଡି ଆସୁଥିବା ଏହି ପରିଚିତ ଢଗଟି ଓଡିଶା ମାଟିର ସେଇ ବୀର ପୁରୁଷ, ପ୍ରଚଣ୍ଡ ଦେଶପ୍ରେମୀ ତଥା ଅଗ୍ନିଶମ ବିପ୍ଳବୀ ଯୋଦ୍ଧା ଚାଖି ଖୁଣ୍ଟିଆ ଓରଫ୍ ଚନ୍ଦନ ହଜୁରୀଙ୍କ ଉଦ୍ଦେଶ୍ୟରେ କୁହାଯାଇଥାଏ । ସ୍ୱାଧୀନତା ପ୍ରାପ୍ତିର ମହାମନ୍ତ୍ରରେ ଓଡିଶାର ଯେଉଁ ବୀର ସନ୍ତାନ ଓ ମହାନ୍ ସଂଗ୍ରାମୀମାନେ ଅଭିମନ୍ତ୍ରିତ ହୋଇ ଇଂରେଜ ଶାସନ ବିରୁଦ୍ଧରେ ସ୍ୱର ଉଠାଇଥିଲେ, ନିଜ ଜୀବନ ଓ ପରିବାରର ସୁଖକୁ ଜଳାଞ୍ଜଳି ଦେଇ ଆନ୍ଦୋଳନ ଓ ପ୍ରତିବାଦ କରୁଥିଲେ ଏବଂ ତାଙ୍କ ସହିତ ସମ୍ମୁଖ ସଂଗ୍ରାମରେ ଉତ୍ତୀର୍ଣ୍ଣ ହୋଇଥିଲେ ସେମାନଙ୍କ ମଧ୍ୟରୁ ଚାଖି ଖୁଣ୍ଟିଆ ଓରଫ୍ ଚନ୍ଦନ ହଜୁରି ଥିଲେ ଅନ୍ୟତମ ଓ ଅସାଧାରଣ । ସ୍ୱାଧୀନତା ସଂଗ୍ରାମରେ ସେ କେବଳ ଓଡିଶାରେ ନୁହେଁ ସାରା ଭାରତବର୍ଷ ପାଇଁ ପ୍ରତିନିଧିତ୍ୱ କରୁଥିଲେ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶେଷ ଭାବେ ଇଂରେଜମାନଙ୍କ କବଳରୁ ଝାନ୍‌ସୀକୁ ରକ୍ଷା କରିବା ପାଇଁ ଯେଉଁଭଳି ପୁରୀର ଶ୍ରୀଜଗନ୍ନାଥଙ୍କ ଜଣେ ସେବାୟତ ଝାନ୍‌ସୀ ଯାଇ ଝାନ୍‌ସୀର ବୀରାଙ୍ଗନା ମହାରାଣୀ ଲକ୍ଷ୍ମୀବାଈଙ୍କୁ ସଂଗ୍ରାମରେ ସାହାଯ୍ୟ ଓ ସହଯୋଗ କରିଥିଲେ, ତାହା ଇତିହାସ ପୃଷ୍ଠାରେ ଏକ ଭିନ୍ନ ଆଲେଖ୍ୟ ସୃଷ୍ଟି କରିଛି ।

ଚାଖି ଖୁଣ୍ଟିଆଙ୍କ ପ୍ରକୃତ ନାମ ଥିଲା ଚନ୍ଦନ ହଜୁରୀ । ୧୮୨୭ ମସିହା ପବିତ୍ର ଶାମ୍ବଦଶମୀ ତିଥିରେ ପୁରୀର ହରଚଣ୍ଡୀ ସାହିର ହଜୁରୀ ପରିବାରରେ ସେ ଜନ୍ମ ହୋଇଥିଲେ । ଶ୍ରୀଜଗନ୍ନାଥଙ୍କ ଚନ୍ଦନ ବେଶ ବେଳେ ଜନ୍ମ ହୋଇଥିବାରୁ ତାଙ୍କ ନାମ ଚନ୍ଦନ ରଖାଗଲା । ପିତା ଭୀମସେନ ହଜୁରୀ ଓ ମାତା ଥିଲେ କମଳା ଦେବୀ । ଏହି ହଜୁରୀ ଉପାଧିଟି ପୁରୀର ଗଜପତି ମହାରାଜା ତାଙ୍କ ପୂର୍ବପୁରୁଷଙ୍କୁ ପ୍ରଦାନ କରିଥିଲେ ଏବଂ ତାଙ୍କୁ ହଜୁର ବୋଲି ସମ୍ମାନ କରିବାକୁ ଗଜପତିଙ୍କ ଆଦେଶ ମଧ୍ୟ ଥିଲା । ସେ ମଧ୍ୟ ଖୁଣ୍ଟିଆ ଭାବେ ଜଗନ୍ନାଥଙ୍କ ସେବାକାରୀ ଥିଲେ ଏବଂ ସେଥିପାଇଁ ତାଙ୍କୁ ହଜୁରୀ ଚନ୍ଦନ ଖୁଣ୍ଟିଆ ଏବଂ ପରେ ଚନ୍ଦନ ହଜୁରୀ ନାମରେ ପରିଚିତ ଥିଲେ । କିନ୍ତୁ ଏସବୁ ପରେ ସେ ସବୁଠୁ ବେଶି ଲୋକପ୍ରିୟ ଓ ପରିଚିତ ହୋଇଥିଲେ ଚାଖି ଖୁଣ୍ଟିଆ ନାମରେ । ଯାହା କାଳର ସ୍ରୋତରେ ଲୋକ ମୁଖରୁ କେବେ ବି ଲିଭି ନାହିଁ କି ଲିଭି ପାରିବ ନାହିଁ ।

ଏଭଳି ନାମର ବି ଏକ କାରଣ ଥିଲା । ଚନ୍ଦନ ହଜୁରୀ ପିଲାଦିନେ ଖୁବ୍ ଦୁଷ୍ଟ ଓ ଜିଦ୍‌ଖୋର୍ ଥିଲେ । ସବୁଦିନ ବଡ ଦେଉଳକୁ ଯାଇ ଆନନ୍ଦବଜାରରେ ମହାପ୍ରସାଦ ଚାଖୁଥିଲେ। । ତାଙ୍କର ଏପରି କାର୍ଯ୍ୟ ଲୋକଙ୍କ ନଜରରେ ପଡିଲା । ତେଣୁ ତାଙ୍କୁ ସମସ୍ତେ ଚାଖି ବୋଲି ଡାକିବା ଆରମ୍ଭ କଲେ ଏବଂ କ୍ରମେ ସେ ହଜୁରୀ ଚନ୍ଦନ ଖୁଣ୍ଟିଆରୁ ଚାଖି ଖୁଣ୍ଟିଆ ନାମରେ ସବୁଆଡେ ପରିଚିତ ହୋଇଗଲେ । ତେବେ ପିଲାଦିନର ଏହି ଦୁଷ୍ଟାମୀ ଓ ଜିଦିପଣ ହିଁ ତାଙ୍କୁ କୁସ୍ତି, କସରତ ଓ ଶାରୀରିକ ବ୍ୟାୟାମ ଶିଖିବାର ପ୍ରେରଣା ଦେଇଥିଲା । ସେତେବେଳେ ପୁରୀରେ ଅଧିକାଂଶ ସାହିରେ ଆଖଡା ଘରମାନ ଥିଲା । ଚାଖି ଖୁଣ୍ଟିଆ ସେହି ପାରମ୍ପରିକ ଆଖଡା ଘରେ ଏସବୁ ବିଦ୍ୟା ଶିକ୍ଷା କଲେ । ଯାହାକି ତାଙ୍କୁ ଏକ ବଳିଷ୍ଠ ବପୁଧାରୀ ଓ ସୁଦୃଢ ମାଂସପେଶିଯୁକ୍ତ ଶରୀର ଗଢିବାରେ ସାହାଯ୍ୟ କରିଥିଲା ଏବଂ ପରବର୍ତ୍ତୀ ସମୟରେ ଏକ ବୀର ଯୋଦ୍ଧାରେ ପରିଣତ କରାଇଥିଲା । ସେ ଚାଟଶାଳୀରେ ପାଠ ପଢି ଓଡିଆ ଭାଷା ସାହିତ୍ୟ ଓ ସଂସ୍କୃତରେ ଶିକ୍ଷାଲାଭ କରିଥିଲେ । ଏଥି ସହିତ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ପାଇଁ ଓଡିଶା ବାହାରୁ ଆସୁଥିବା ତୀର୍ଥଯାତ୍ରୀମାନଙ୍କ ସହିତ ଯୋଗାଯୋଗ କରିବାକୁ ସେ ହିନ୍ଦୀ ଭାଷା ମଧ୍ୟ ଶିଖିଥିଲେ ।

ଶ୍ରୀକ୍ଷେତ୍ର ପୁରୀରେ ଜନ୍ମ ଗ୍ରହଣ କରି ଏବଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସେବାୟତ ଭାବେ କାର୍ଯ୍ୟ କରୁଥିବା ଚାଖି ଖୁଣ୍ଟିଆ ଯେ ଦିନେ ଦୁର୍ଦ୍ଧର୍ଷ ଇଂରେଜ ସରକାରଙ୍କ ବିରୁଦ୍ଧରେ ଯୁଦ୍ଧ କରିବେ,ଯେଉଁ ହାତରେ ଚନ୍ଦନ,ତୁଳସୀ ଓ ଫୁଲ ଧରୁଥିଲେ ସେଇ ହାତ ଯେ ଦିନେ ଯୁଦ୍ଧ କ୍ଷେତ୍ରରେ ଶାଣିତ ତରବାରୀ ଚାଳନା କରିପାରେ, ଏକଥା ଅବିଶ୍ୱସନୀୟ ଥିଲେ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ ଥିଲା । ସେ ଯେତିକି ଜଗନ୍ନାଥଙ୍କ ପରମ ଭକ୍ତ ଓ ସେବକ ଥିଲେ ସେତିକି ଦେଶ ପାଇଁ ଭକ୍ତି ଓ ସେବା କରିଥିଲେ ।

ବାଣିଜ୍ୟ କରିବା ଆଳରେ ଚତୁର ଇଂରେଜମାନେ ଯେପରି ସୁନାର ଭାରତକୁ ଲୁଣ୍ଠନ କରିବା ପାଇଁ ଅନଧିକାର ପ୍ରବେଶ, ଅତ୍ୟାଚାର ଓ ଅନ୍ୟାୟ ନୀତିର ଆଚରଣ କରିଥିଲେ, ତାହା ଧୀରେ ଧୀରେ ଦେଶବାସୀଙ୍କ ମନରେ ଭୟ, ଘୃଣା ଓ ବିରୋଧାଭାସର ମଞ୍ଜି ବୁଣିଥିଲା । ପରେ ତାହା ଛୋଟରୁ ବଡ ଆନ୍ଦୋଳନର ଆକାର ଧାରଣ କରିଥିଲା । ସମଗ୍ର ଭାରତ ଭୂଇଁରେ ଇଂରେଜମାନଙ୍କ ଅକ୍ତିଆର ଓ ଅତ୍ୟାଚାର ବଢିବାକୁ ଲାଗିଲା । ଫଳରେ ଜନସାଧାରଣଙ୍କ ମନରେ ଜୀବନ ଓ ଜନ୍ମଭୂଇଁର ରକ୍ଷା ପାଇଁ ତୀବ୍ର ପ୍ରତିବାଦ ଓ ପ୍ରତିରୋଧର ଶକ୍ତି ଜାଗ୍ରତ ହୋଇ ଉଠିଲା । ସମସ୍ତେ ହୃଦ୍‌ବୋଧ କଲେ ଯେ ନିଜ ଦେଶରେ ବି ସେମାନେ ପରାଧୀନ ଓ ଦାସ ଭଳି ଚଳୁଛନ୍ତି ଏବଂ ଏହି ବିରୋଧାଭାଷର ଆରମ୍ଭ ହୋଇଥିଲା ୧୮୫୭ ମସିହାର ସିପାହି ବିଦ୍ରୋହରୁ । ଏହି ବିଦ୍ରୋହ ସମଗ୍ର ଭାରତରେ ଖେଳି ଯାଇଥିଲା ଏବଂ ଭାରତର ବିଭିନ୍ନ ଅଂଚଳରୁ ଯେଉଁ ଦେଶପ୍ରେମୀ ବୀର ସନ୍ତାନମାନେ ସିପାହି ବିଦ୍ରୋହରେ ସାମିଲ ହୋଇଥିଲେ, ସେମାନଙ୍କ ମଧ୍ୟରୁ ଚାଖି ଖୁଣ୍ଟିଆ ଥିଲେ ଅନ୍ୟତମ ଏବଂ ଶେଷରେ ପୁରୀର ଜଣେ ସେବାୟତ (ଚାଖି ଖୁଣ୍ଟିଆ) ଝାନ୍‌ସୀକୁ ଯାଇ ରାଣୀ ଲକ୍ଷ୍ମୀବାଈଙ୍କ ସହିତ ଇଂରେଜ ସରକାର ବିରୁଦ୍ଧରେ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣ ହେବା ବାସ୍ତବିକ କେଡେ ଆଶ୍ଚର୍ଯ୍ୟ ଓ ଅବିସ୍ମରଣୀୟ ନୁହେଁ କି ?

ସେତେବେଳେ ଝାନ୍‌ସୀର ରାଜା ଗଙ୍ଗାଧର ରାଓଙ୍କ ପୂଜାପଣ୍ଡା ଭାବେ ଚାଖିଙ୍କ ବାପା କାର୍ଯ୍ୟ କରୁଥିଲେ । ଝାନ୍‌ସୀ ରାଣୀଙ୍କ ପିତା ଥିଲେ ପେଶୱାଙ୍କ ଦେୱାନ । ପେଶୱାଙ୍କ ପାଖକୁ ପିତାଙ୍କ ସହ ଚାଖି ଖୁଣ୍ଟିଆ ଯାଇଥିଲେ ଏବଂ ସେଇ ମଉକାରେ ସେଠାରେ ଦେୱାଙ୍କ ଝିଅ ମନୁବାଈ ଓ ପେଶୱାଙ୍କ ପୋଷ୍ୟପୁତ୍ର ନାନା ସାହେବଙ୍କ ସହ ସାଙ୍ଗ ହୋଇ ଖଣ୍ଡା ଚାଳନା ଓ ଘୋଡାଚଢା ଶିକ୍ଷା କରିଥିଲେ । ଗଙ୍ଗାଧର ରାଓଙ୍କ ପ୍ରଥମ ପତ୍ନୀ ମରି ଯାଇଥିଲେ । ଚାଖି ଖୁଣ୍ଟିଆଙ୍କ ପିତା ଭୀମସେନ ଖୁଣ୍ଟିଆ ମଧ୍ୟସ୍ଥତା କରି ଗଙ୍ଗାଧର ରାଓଙ୍କ ସହିତ ମନୁବାଈଙ୍କ ବିବାହ କରାଇଥିଲେ ଏବଂ ବିବାହ ପରେ ମନୁବାଈଙ୍କ ନାମ ଲକ୍ଷ୍ମୀବାଈ ହୋଇଥିଲା । ମାତ୍ର ଭାଗ୍ୟର ବିଡମ୍ବନା, ଲକ୍ଷ୍ମୀବାଈ ମାତ୍ର ୨୧ ବର୍ଷ ବୟସରେ ସ୍ୱାମୀଙ୍କୁ ହରାଇଲେ ।

ଯଦ୍ଦ୍ୱାରା ସେ ପୋଷ୍ୟପୁତ୍ର ଗ୍ରହଣ କରିବାରୁ ଇଂରେଜ ସରକାର ତାଙ୍କ ବିରୁଦ୍ଧରେ ଯୁଦ୍ଧ ଡାକରା ଦେଇଥିଲେ ।

ସମାନ ଘଟଣା ପୁରୀରେ ମଧ୍ୟ ଘଟିଥିଲା । ସେତେବେଳକୁ ଇଂରେଜମାନେ ଚିଲିକା ପାର ହୋଇ ବ୍ରହ୍ମଗିରି

ବାଟେ ପୁରୀରେ ପ୍ରବେଶ କରି ସାରିଥିଲେ ଏବଂ ଜଗନ୍ନାଥଙ୍କ ବିଷୟରେ ଖୁବ୍ ନିନ୍ଦା ଓ ଅପପ୍ରଚାର କରୁଥିଲେ । ସେହି ସମୟର ଗଜପତି ମୁକୁନ୍ଦଦେବ ବଡଖେମୁଣ୍ଡି ରାଜାଙ୍କ ପୁଅକୁ ପୋଷ୍ୟପୁତ୍ର କରିଥିଲେ । ତାଙ୍କ ନାମ ଦିବ୍ୟସିଂହ ଦେବ ରଖାଯାଇଥିଲା ଓ ସେ ନାବାଳକ ଥିବାରୁ ତାଙ୍କ ପାଇଁ ରାଜମାତା ସୂର୍ଯ୍ୟମଣି ଦେବୀ ଶ୍ରୀମନ୍ଦିରର ପରିଚାଳନା ଦାୟିତ୍ୱ ତୁଲାଉଥିଲେ । ତେଣୁ ଇଂରେଜ ସରକାର ରାଜମାତାଙ୍କ ପ୍ରତି ମଧ୍ୟ କଠୋର ବ୍ୟବହାର କରୁଥିଲେ, ଯାହାକି ଚାଖି ଖୁଣ୍ଟିଆଙ୍କ ପକ୍ଷେ ଅସହ୍ୟ ଥିଲା ଏବଂ ସେ ଏଥିରେ ଖୁବ୍ ମର୍ମାହତ ହେଉଥିଲେ । ଇଂରେଜମାନଙ୍କ ଏହି ମନମୁଖୀ ଶାସନ ଓ ଅତ୍ୟାଚାରର ଉଚିତ୍ ଜବାବ୍ ଦେବାକୁ ଚାଖି ଚିନ୍ତା କରୁଥିବା ବେଳେ ହିଁ ରାଣୀ ଲକ୍ଷ୍ମୀବାଈଙ୍କଠାରୁ ବାର୍ତ୍ତା ଆସି ପହଁଚିଲା । ଇଂରେଜମାନଙ୍କ ବିରୁଦ୍ଧରେ ଲଢେଇ କରିବା ପାଇଁ ରାଣୀ ଲକ୍ଷ୍ମୀବାଈଙ୍କଠାରୁ ଚାଖି ଖୁଣ୍ଟିଆଙ୍କ ସାହାଯ୍ୟ ଓ ସହଯୋଗର ନିବେଦନ ପତ୍ର । ଇଂରେଜ ବିରୁଦ୍ଧରେ ସଂଗ୍ରାମ କରିବାର ଆହ୍ୱାନ । ଏମିତି ଏକ ସୁଯୋଗ ଖୋଜୁଥିଲେ ଚାଖି ଏବଂ ସେ ଝାନ୍ସୀ ଯିବା ପାଇଁ ପ୍ରସ୍ତୁତ ହେଲେ । ପିଲାଦିନରୁ ତ ସେ କୁସ୍ତି କସରତ ଓ ସମରବିଦ୍ୟାରେ ପାରଙ୍ଗମ ଥିଲେ, ତେଣୁ ମାଟି ମାଆର ଦରକାର ବେଳେ ତାହା ଯଦି କାମରେ ନ ଲାଗେ କି ଲାଭ ! ଶେଷରେ ସେ ବୁଲିବାକୁ ଯାଉଛନ୍ତି ବୋଲି କହି ପତ୍ନୀ ସୁନ୍ଦରମଣିଙ୍କୁ ତାଙ୍କର ବିଧବା ପିଉସୀ ପାରୀନାନୀଙ୍କ ଦାୟିତ୍ୱରେ ଛାଡି ଝାନ୍ସୀ ଅଭିମୁଖେ ଯାତ୍ରା କଲେ ।

ତାଙ୍କୁ ଦେଖି ରାଣୀଙ୍କ ସାହସ ଓ ମନୋବଳ ବଢି ଯାଇଥିଲା । ଝାନ୍ସୀରେ ପହଁଚିବା ପରେ ସେ ପ୍ରଥମେ ଝାନ୍ସୀର ଗ୍ରାମାଂଚଳ ଭ୍ରମଣ କରିଥିଲେ ଓ ଗୋପନରେ ଯେଉଁ ସଂଗ୍ରାମର ବୀଜକୁ ଝାନ୍ସୀର ମାଟିରେ ବୁଣି ଦେଇଥିଲେ ତାହା ଦିନେ ମହା ଦ୍ରୁମରେ ଠିଆ ହେଲା । ତା'ପରେ ଚାଲିଲା ନଅରର ମନ୍ତ୍ରଣା କକ୍ଷରେ ଗୁପ୍ତ ଆଲୋଚନା । ଚତୁର ଓ ଦୁର୍ଦ୍ଧର୍ଷ ଇଂରେଜମାନଙ୍କ ସହ କିପରି ସଂଗ୍ରାମ କରିବାକୁ ପଡିବ ସେ ବିଷୟରେ ରାଣୀ ଲକ୍ଷ୍ମୀବାଈ, ନାନା ସାହେବ ଓ ତାନ୍ତିଆ ଟୋପେ ମିଶି ମନ୍ତ୍ରଣା କଲେ ଓ ସେଥିରେ ଚାଖି ଖୁଣ୍ଟିଆ ଥିଲେ ମୁଖ୍ୟ ସୂତ୍ରଧର ।

ସେହି ସମୟରେ ସିପାହି ବିଦ୍ରୋହ ତୀବ୍ର ରୂପ ଧାରଣ କରି ସାରିଥିଲା ଓ ଏହା ଭାରତର ସବୁ ଅଂଚଳକୁ ବ୍ୟାପୀ ଯାଇଥିଲା । ବିଦ୍ରୋହର କାରଣ ଥିଲା ବନ୍ଧୁକ ନଳୀରେ ଲଗା ଯାଇଥିବା ଗୋରୁ ଓ ଘୁଷୁରିର ଚର୍ବି ଯାହାକୁ ହିନ୍ଦୁ ଓ ମୁସଲମାନ ସିପାହିଙ୍କୁ ଦାନ୍ତରେ କାମୁଡି ତୋପ ଫୁଟାଇବାକୁ ବାଧ୍ୟ କରାଯାଉଥିଲା । ଯେଉଁଥିପାଇଁ ସେମାନେ ଧର୍ମ ନଷ୍ଟ ହେବା ଭୟ ଓ ଅସନ୍ତୋଷରେ କ୍ଷୁବ୍ଧ ହୋଇ ବିଦ୍ରୋହ ଆରମ୍ଭ କରିଥିଲେ ଏବଂ ଏହାର ସୁଯୋଗ ନେଇଥିଲେ ଚନ୍ଦନ ହଜୁରୀ ।

ରାଣୀ ଲକ୍ଷ୍ମୀବାଈଙ୍କଠାରୁ ବାର୍ତ୍ତା ନେଇ ଚାଖି ଉତ୍ତର ପ୍ରଦେଶରେ ଥିବା ନାନା ସାହେବଙ୍କୁ ଭେଟିଲେ । ତା'ପରେ ତାନ୍ତିଆ ଟୋପେଙ୍କ ସହ କଥାବାର୍ତ୍ତା କରି ବିଦ୍ରୋହର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ କରିଥିଲେ । ଇଂରେଜମାନଙ୍କ ପ୍ରତି ମୂଳରୁ ଅଶାନ୍ତି ଥିବା ମୁସଲମାନ ନେତା ସକିଲ ଆଜମୋଲ୍ଲା ଖାଁ ଓ ଦିଲ୍ଲୀ ସମ୍ରାଟ୍ ବାହାଦୁର ଶାହାଙ୍କ ସହିତ ଯୋଗାଯୋଗ କରି ରାଣୀ ଲକ୍ଷ୍ମୀବାଈଙ୍କ ସାମରିକ ଶକ୍ତିର ବୃଦ୍ଧି ଘଟାଇଥିଲେ ଏହି ନିର୍ଭୀକ ବୀର ପୁରୁଷ ।

ଝାନ୍ସୀର ସ୍ୱାଧୀନତା ପାଇଁ ଚାଖି ଖୁଣ୍ଟିଆ ଯେଉଁଭଳି ଭାବରେ ରାଣୀଙ୍କ ପାଖେ ପାଖେ ରହି ରଣନୀତି, ପରାମର୍ଶ ଓ ସାହାଯ୍ୟ କରୁଥିଲେ, ତାହା ରାଣୀଙ୍କ ପାଇଁ ବିଜୟର ପଥ ସୁଗମ କରିବାରେ ଖୁବ୍ ସହଜ ହେଉଥିଲା । ମାତ୍ର କାଳେ କାଳେ କେତେକ ଦେଶଦ୍ରୋହୀ, ଆପଣାସ୍ୱାର୍ଥୀ ଓ ଅସହିଷ୍ଣୁଙ୍କ ପାଇଁ ହିଁ ଉଦିତ ହେବାକୁ ଥିବା ସୂର୍ଯ୍ୟ ଉପରେ କଳା ବାଦଲ ଘୋଡେଇ ଦେଇ ଅନ୍ଧାର କରିଦିଏ । ଠିକ୍ ଯେପରି ହୋଇଥିଲା ରାଣୀ ଲକ୍ଷ୍ମୀବାଈଙ୍କ ଭାଗ୍ୟରେ । ଚାଖି ଖୁଣ୍ଟିଆଙ୍କ ପ୍ରତି ଅସହିଷ୍ଣୁ ହୋଇ ରାଣୀଙ୍କ ଆଉ ଜଣେ ସହଯୋଗୀ ବୁନ୍ଦିଲା ସର୍ଦ୍ଦାର ଲାଲାଜୀ ଠାକୁର ବିଶ୍ୱାସଘାତକତା କରିଥିଲେ । ଇଂରେଜମାନଙ୍କ ପାଇଁ ସେ

ମୂଳ ଦୁର୍ଗର ବରାହ ଦରବାଜା ଖୋଲିଦେଲେ । ଫଳରେ ଇଂରେଜମାନଙ୍କୁ ସୁବିଧା ହୋଇଥିଲା ଦୁର୍ଗ ଅକ୍ତିଆର କରିନେବାକୁ । ମାତ୍ର ଚାଖି ଏହା ଜାଣିପାରି ରାଣୀଙ୍କୁ ପରାମର୍ଶ ଦେଇଥିଲେ ଦୁର୍ଗ ଛାଡି ଚାଲି ଯିବାପାଇଁ । ରାଣୀ ମଧ୍ୟ ତାଙ୍କ କଥା ମାନି ପୁତ୍ର ଦାମୋଦରକୁ ପିଠିରେ ବାନ୍ଧି ସେଇ ଘନ ଅନ୍ଧାର ରାତିରେ ଦୁର୍ଗ ଛାଡି ଚାଲିଗଲେ ଏବଂ ସାଥିରେ ଥିଲେ କେବଳ ବିପ୍ଳବର ଅଗ୍ନିଶିଖା ଚନ୍ଦନ ହଜୁରୀ ।

ତଥାପି ବୀରାଙ୍ଗନା ଯୋଦ୍ଧା ରମଣୀ ରାଣୀ ଲକ୍ଷ୍ମୀବାଈ ନା ଇଂରେଜମାନଙ୍କ ହାତରେ ଧରା ଦେବାକୁ ନା ତାଙ୍କ ସମ୍ମୁଖରେ ପରାସ୍ତ ମାନିବାକୁ ଚାହୁଁଥିଲେ । ତେଣୁ ସେ ଝାନ୍‌ସୀକୁ ରକ୍ଷା କରିବା ପାଇଁ ଆପ୍ରାଣ ଚେଷ୍ଟା ଚଳାଇଥିଲେ । ଚାଖିଙ୍କ ସହିତ ରାଣୀଙ୍କ ଆଉ ଦୁଇଜଣ ସହଯୋଗୀ ରାମଚନ୍ଦ୍ର ଦେଖମୁଖ ଓ ଖୋଦାବକ୍ସ ମଧ୍ୟ ଥିଲେ । ୧୮୫୮ ମସିହା ମାର୍ଚ୍ଚ ମାସ ୧୩ ତାରିଖରେ ଇଂରେଜମାନେ ଯେତେବେଳେ ଝାନ୍‌ସୀ ଆକ୍ରମଣ କଲେ, ସେତେବେଳେ ପୂର୍ବ ଯୋଜନା ଅନୁସାରେ ତାନ୍ତିଆ ଟୋପେ ୨୦୦ ତୋପ ଓ କୋଡିଏ ହଜାର ସୈନ୍ୟ ଧରି ଇଂରେଜମାନଙ୍କ ପଛରୁ ଆକ୍ରମଣ କରିବା ପାଇଁ ଆସୁଥିବା ବେଳେ ଅଧାବାଟରେ ଧରା ପଡିଗଲେ । ଝାନ୍‌ସୀରେ ପହଁଚି ପାରିଲେ ନାହିଁ । ରାଣୀଙ୍କ ପିତା ମଧ୍ୟ ଯୁଦ୍ଧରେ ନିହତ ହୋଇଥିଲେ । ଝାନ୍‌ସୀ ଲକ୍ଷ୍ମୀବାଈଙ୍କ ହାତରୁ ଚାଲିଗଲା ଇଂରେଜମାନଙ୍କ ହାତକୁ ।

କିନ୍ତୁ ବୀରାଙ୍ଗନା ରାଣୀ ପରାଜୟ ସ୍ୱୀକାର କରିନଥିଲେ । ସେ ଗୋଆଲିୟରର ମରହଟ୍ଟା ରାଜା ସିନ୍ଧିଆଙ୍କଠାରୁ ମଧ୍ୟ ସାହାଯ୍ୟ ମାଗିଥିଲେ । ମାତ୍ର ପ୍ରଥମେ ସେ ଯଦିଓ ରାଜି ହୋଇଥିଲେପରେ ଇଂରେଜମାନଙ୍କ ଭୟରେ ସେ ମଧ୍ୟ ସାହାଯ୍ୟ କରିବାକୁ ପଛଘୁଞ୍ଚା ଦେଲେ । ଲକ୍ଷ୍ମୀବାଈ କିନ୍ତୁ ଚେଷ୍ଟା ଜାରି ରଖିଥିଲେ ଝାନ୍‌ସୀକୁ ରକ୍ଷା କରିବା ପାଇଁ । ଗୋଆଲିୟର ପାଖାପାଖି ଅଂଚଳରେ ରାଣୀ ଇଂରେଜମାନଙ୍କ ସହିତ ଯୁଦ୍ଧ ଅବ୍ୟାହତ ରଖିଥିଲେ ଏବଂ ସେଠାରେ ଚାଖି ଖୁଣ୍ଟିଆ ସାଧୁ ଗଙ୍ଗାଦାସ ନାମରେ ଛଦ୍ମବେଶରେ ରହି ରାଣୀଙ୍କୁ ସହଯୋଗ କରୁଥିଲେ । ସେ ନଗର ପରିକ୍ରମା କରିବା ଅବସରରେ ଗୋଟିଏ ମନ୍ଦିର ଆଢୁଆଳରେ ଲୁଚି ରହି ଜଣେ ସାଧୁ ଓ ଦୁଇଜଣ ଯୁବକଙ୍କ ଗୁପ୍ତ ଆଲୋଚନା ଶୁଣିବା ପରେ ଚନ୍ଦନ ହଜୁରୀଙ୍କୁ ବିଦ୍ରୋହର ନୂତନ ଆଶା ଓ ଆଲୋକର ରଶ୍ମୀ ମିଳିଥିଲା । ତଦନୁଯାୟୀ ସେ ରାଣୀଙ୍କୁ ପରାମର୍ଶ ଦେଉଥିଲେ ଓ ଯୁଦ୍ଧର ଭିତ୍ତିଭୂମି ପ୍ରସ୍ତୁତ କରୁଥିଲେ । ସେଠାରୁ ସେ ମିଠୁର ମଧ୍ୟ ଯାଇଥିଲେ । ମିଠୁରର ଶାସକ ନାନା ସାହେବ ଯିଏ କି ଲର୍ଡ ଡେଲ୍‌ହାଉସଙ୍କ ନୂଆ ଆଇନ ବଳରେ ନିଜର ପେଶଓ୍ୱା ପଦବୀ ଓ ଭତ୍ତା ହରାଇ ପ୍ରତିଶୋଧର ଜ୍ୱାଳାରେ ଛଟପଟ ହେଉଥିଲେ । ତେଣୁ ଚାଖିଙ୍କଠାରୁ ଖବର ପାଇ ସେ ମଧ୍ୟ ଯୁଦ୍ଧରେ ଅବତରଣ କରିଥିଲେ । ଘମାଘୋଟ ଯୁଦ୍ଧ ଲାଗି ରହିଲା । ରାଣୀ ଯୁଦ୍ଧରେ ଭୀଷଣ କ୍ଷତାକ୍ତ ଓ ରକ୍ତାକ୍ତ ହୋଇଥିଲେ ମଧ୍ୟ ପ୍ରବଳ ପରାକ୍ରମରେ ଯୁଦ୍ଧ କରୁଥିଲେ ଏବଂ କ୍ଳାନ୍ତ ସୈନିକମାନଙ୍କୁ ଉତ୍ସାହିତ କରୁଥିଲେ । କିନ୍ତୁ ଏପରି ଜଣେ ବୀରା ରମଣୀ ପ୍ରତି ଈଶ୍ୱର କାହିଁକି ଅବିଚାର କଲେ କେଜାଣି ! ଇଂରେଜମାନେ ତାଙ୍କୁ ଚାରିପଟୁ ଅକ୍ତିଆର କରି ନେଇଥିଲେ । ରାଣୀ ସେଠାରୁ କୌଶଳକ୍ରମେ ଖସି ପଳାଉଥିବା ସମୟରେ ବାଟରେ ଏକ ନଦୀ ପାଖର ପାଣି ଟାପୁରେ ତାଙ୍କ କ୍ଳାନ୍ତ ଘୋଡାର ଗୋଡ ପଡି ଯିବାରୁ ସେ ଅଟକି ଗଲା ଏବଂ ଏହି ସମୟରେ ପଛରୁ ଗୋଡାଉଥିବା ଇଂରେଜ ସୈନିକଙ୍କ ଗୁଳିରେ ରାଣୀ ସେହିଠାରେ ଟଳି ପଡିଲେ । ସବୁଦିନ ପାଇଁ ଲିଭି ଆସୁଥିବା ଜୀବନଦୀପର ସେଇ ଅନ୍ତିମ ମୁହୂର୍ତ୍ତରେ ରାଣୀଙ୍କ ପାଖରେ ଥିଲେ ରାମଚନ୍ଦ୍ର ଦେଶମୁଖ ଓ ଚାଖି ଖୁଣ୍ଟିଆ । ଶେଷ ସମୟରେ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ଓ ପାଣି ଟିକେ ରାଣୀଙ୍କୁ ଦେଇ ବିଦାୟ ନେଇଥିଲେ ଚାଖି ଖୁଣ୍ଟିଆ ।

ରାଣୀ କହିଥିଲେ ଇଂରେଜମାନେ ଯେପରି ତାଙ୍କ ଶରୀରକୁ ଛୁଇଁ ପାରିବେ ନାହିଁ । ତେଣୁ ନଦୀର ଆରପଟେ ଜଳନ୍ତା ଯୂଇରେ ଚିରନିଦ୍ରାରେ ଶୋଇଗଲେ ଝାନ୍‌ସୀର ବୀରାଙ୍ଗନା ମହାରାଣୀ ଲକ୍ଷ୍ମୀବାଈ । ସହଯୋଗୀ ତାନ୍ତିଆ ଟୋପେଙ୍କୁ ଫାଶୀ ଖୁଣ୍ଟିରେ ଝୁଲାଇ ଦିଆଗଲା । ନାନା ସାହେବ କେଉଁଆଡେ ଅନ୍ତର୍ଦ୍ଧାନ ହୋଇଗଲେ । ଚାଖି ଖୁଣ୍ଟିଆ ଦୁଃଖ ଓ ଯନ୍ତ୍ରଣାରେ ବିଳପି ଉଠିଲେ । ତାଙ୍କର ସମସ୍ତ ସାଥୀ ଓ ପ୍ରିୟ ରାଣୀଙ୍କୁ ହରାଇ ସେ ହା' ହା'କାର କରି

ଉଠିଲେ । ତାଙ୍କର ସବୁ ସ୍ୱପ୍ନ ଓ ଲକ୍ଷ୍ୟ ଯେମିତି ଅଧା ରହିଗଲା । ସେ ଭାବୁଥିଲେ ଯୁଦ୍ଧକ୍ଷେତ୍ରରେ ତାଙ୍କ ପ୍ରାଣବାୟୁ ଉଡିନ ଗଲା କାହିଁକି । କାହିଁକି ସେ ଏଭଳି ଦାରୁଣ ଯନ୍ତ୍ରଣାକୁ ସହିବା ପାଇଁ ବଂଚି ରହିଲେ ? ମରି ଯାଇଥିଲେ ବରଂ ଏ ଯନ୍ତ୍ରଣା ଓ ଅନ୍ତର୍ଦାହରୁ ମୁକ୍ତି ପାଇଥାନ୍ତେ । ବିଶେଷକରି ପ୍ରିୟ ରାଣୀଙ୍କ ଅଭୁଲା ସ୍ମୃତି ଓ ତାଙ୍କର ସେ ଆଦରଭରା 'ଭାଇଜୀ' ଡାକ ତାଙ୍କୁ ଅହରହ ଆନ୍ଦୋଳିତ କରୁଥିଲା । ଖୁବ୍ କଷ୍ଟ ଦେଉଥିଲା ।

ଚାଖି ଉପାୟଶୂନ୍ୟ ଓ ଦିଗହରା ହୋଇ ଜଙ୍ଗଲ ଭିତରେ ଆତ୍ମଗୋପନ କଲେ ଅନେକ ବର୍ଷ ଯାଏଁ । ଇଂରେଜମାନଙ୍କ ଆଗରେ ମିଛରେ ପ୍ରଚାର କରାଗଲା ଯେ ଚାଖି ଖୁଣ୍ଟିଆଙ୍କର ମୃତ୍ୟୁ ହୋଇଯାଇଛି ବୋଲି । ତାଙ୍କ ମୃତ୍ୟୁ ଖବର ପୁରୀରେ ଆସି ତଡିତ୍ ବେଗରେ ପ୍ରଚାରିତ ହୋଇଗଲା । ସମସ୍ତ ପୁରୀବାସୀ ସ୍ତବ୍ଧ ହୋଇଗଲେ । ଗଜପତି ଦିବ୍ୟସିଂହ ଦେବ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡିଲେ । ତାଙ୍କର (ଚାଖିଙ୍କର) ପତ୍ନୀ ସୁନ୍ଦରମଣିଙ୍କୁ ବିଧବା କରାଇ ଦିଆଗଲା ।

ପରିସ୍ଥିତି କିଛିଟା ଥମିଗଲା ପରେ ଚାଖି ଜଙ୍ଗଲରୁ ବାହାରି ଜଣେ ଜଗନ୍ନାଥ ଭକ୍ତ ରାଜା କାଲାକାରଙ୍କ ନିକଟରେ ଆଶ୍ରୟ ନେଇଥିଲେ । ସେହି ସମୟରେ ଇଂରେଜ ସରକାର ଏକ ଘୋଷଣା କଲେ ଯେ ଯେଉଁମାନଙ୍କ ନାମରେ ମଣିଷ ମାରିବା ପ୍ରମାଣ ନାହିଁ, ସେମାନଙ୍କୁ କ୍ଷମା କରାଯିବ । ତେଣୁ ରାଜା କାଲାକାରଙ୍କ ପରାମର୍ଶରେ ଚନ୍ଦନ ହଜୁରୀ ୧୮୬୫ ମସିହା କୁମାର ପୂର୍ଣ୍ଣିମା ଦିନ ପୁରୀକୁ ଫେରିଲେ । ମାତ୍ର କାର୍ତ୍ତିକ ମାସରେ ଘରକୁ ଫେରିବେନି ଭାବି ତାଙ୍କର ଜଣେ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ଘରେ ପ୍ରାୟ ଦେଢମାସ ରହିଲେ ଏବଂ ଦିନେ ମନ୍ଦିରରେ ପତ୍ନୀ ସୁନ୍ଦରମଣିଙ୍କ ସହିତ ତାଙ୍କର ଭେଟ ହେଲା । ସେଇଠାରେ ହିଁ ପାରୀନାନୀ ତାଙ୍କୁ ଚିହ୍ନି ପାରିଥିଲେ ଏବଂ ସେଇ ଚିର ପ୍ରଚଳିତ ଢଗଟି (ନଈରେ ବାଳିଆ ଚହଟିଲା....) ବୋଲିଦେଇ ଚାଖିଙ୍କ ଉଦ୍ଦେଶ୍ୟରେ ଇଙ୍ଗିତ କରିଥିଲେ ।

ସୁନ୍ଦରମଣି ପୁଣି ସଧବା ବେଶରେ ସଜ୍ଜିତ ହେଲେ । ଚାଖି ନିଜ ଘରକୁ ଫେରିଲେ । ଗଜପତି ଦିବ୍ୟସିଂହ ଦେବ ତାଙ୍କୁ ସସମ୍ମାନେ ସ୍ୱାଗତ କଲେ । ମାତ୍ର କିଛି ଦିନ ପରେ ଇଂରେଜମାନେ ତାଙ୍କୁ ମଣିଷ ମାରିବା ଅପରାଧରେ କଳାପାଣି ପଠାଇ ଆଜୀବନ ଜେଲ୍‌ଦଣ୍ଡ ଦେଲେ । ପୁଣି ଦୁଃଖରେ ବିଳପି ଉଠିଲେ ଚାଖି ଖୁଣ୍ଟିଆ । ପୁରୀରେ ତାଙ୍କର ବିଚାର ଚାଲିଲା । ତାଙ୍କ ବିରୁଦ୍ଧରେ ମଣିଷ ମାରିବା ପ୍ରମାଣ ନ ଥିବାରୁ କୌଣସି ଦଣ୍ଡ ଦିଆ ନ ଯାଇ କେବଳ ନଜରବନ୍ଦୀରେ ରଖାଗଲା । ସେ ପ୍ରତିଦିନ ଥାନାରେ ହାଜର ହୋଇ ପରେ ଶ୍ରୀଜଗନ୍ନାଥଙ୍କ ନିକଟକୁ ଚାଲି ଯାଉଥିଲେ । ସେଇଠାରେ ହିଁ ସେ ତାଙ୍କ ଜୀବନର ଯେତେସବୁ ଦୁଃଖ, ଅବସୋସ, ଗ୍ଲାନି ଓ ଅସହାୟତାକୁ ଆତୁର ଭାବରେ ବାଢି ଦେଉଥିଲେ । ଶେଷ ଜୀବନର ସମସ୍ତ ସାହା ଭରସା ହରାଇ ସେ ଜଗନ୍ନାଥଙ୍କ ସେବା ଓ ଭକ୍ତିରେ ନିଜକୁ ସମର୍ପିତ କରିଦେଇଥିଲେ । ନିଜର ଯେତେସବୁ ଅନ୍ତର୍ଦାହ ଓ ଅବସୋସକୁ ପାଥେୟ କରି ସେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଅନେକ ଭଜନ ଓ ଜଣାଣ ଲେଖିଥିଲେ, ଯାହା ସମସ୍ତଙ୍କ ଅନ୍ତରକୁ ଆଜି ଯାଏଁ ଛୁଉଁଅଛି ।

ଏହିଭଳି ଏକ ଅଭାବନୀୟ ଓ ଅବସୋସଭରା ତଥା ଆକୁଳିତ ପରିସ୍ଥିତିରେ ଜଣେ ପ୍ରଚଣ୍ଡ ସ୍ୱାଧୀନତା ସଂଗ୍ରାମୀ ଓ ବିପ୍ଳବୀ ବୀର ପୁରୁଷଙ୍କର ୧୮୭୦ ମସିହାରେ ମହାପ୍ରୟାଣ ଘଟିଥିଲା । ଚନ୍ଦନ ହଜୁରୀ ବା ଚାଖି ଖୁଣ୍ଟିଆଙ୍କ ବୀରତ୍ୱ, ପରାକାଷ୍ଠା ଓ ଦେଶପ୍ରେମ, ଇତିହାସରେ ଏକ ନିଆରା ପୃଷ୍ଠା ମଣ୍ଡନ କରିଥିଲା ଏବଂ ପୁରୀର ସ୍ୱର ଝାନ୍‌ସୀରେ ନିନାଦିତ ହୋଇ ସମଗ୍ର ଭାରତବର୍ଷରେ ଯେ ଗୁଞ୍ଜରି ଉଠିଥିଲା, ସେକଥା ଏବେ ଭାବିଲେ ଲୋମ ଟାଙ୍କୁରି ଉଠେ ଓ ମସ୍ତକ ନତ ହୋଇଯାଏ ସେଇ ମହାନ୍ ବିପ୍ଳବୀ ବୀର ପୁରୁଷଙ୍କ ବ୍ୟକ୍ତିତ୍ୱ ନିକଟରେ ।

ଘର.ନଂ-ଆଇ.ଭି.୪୫/୧
ୟୁନିଟ୍-୧, ଭୁବନେଶ୍ୱର - ୭୫୧୦୦୯